# ଦୁଆର-ଭଙ୍ଗା

ଚିତାନଳ (କବିତା) ସଭ୍ୟତାର ସାଜ (ଗଳ୍ପ)
ଅମଡ଼ା ବାଟ (ଉପନ୍ୟାସ) ପ୍ରଭୃତିର

ଲେଖିକା
ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକ ଏମ୍. ଏ.

ପ୍ରକାଶକ
ଶାନ୍ତି-ନିବାସ ବାଣୀମନ୍ଦିର
ପୁରୀଘାଟ ରୋଡ଼,
କଟକ—୧

ପ୍ରଥମ ପ୍ରକାଶ
ସେପ୍ଟେମ୍ବର ୧୯୫୬

ମୂଲ୍ୟ ଦେଡ଼ ଟଙ୍କା
ଅତିରିକ୍ତ ନାହିଁ

**କୁଆର ଭଣ୍ଟା** ଓ ଏହି ପ୍ରକାଶନୀର ସମସ୍ତ ପୁସ୍ତକ ପ୍ରକାଶକଙ୍କ ନିକଟରେ ଓ ଓଡ଼ିଶାର ସମସ୍ତ ବିଶିଷ୍ଟ ପୁସ୍ତକ ଦୋକାନମାନଙ୍କରେ ମିଳେ ।

**ଦି ଉତ୍କଳ ଷ୍ଟୋର୍ସ, ବାଲୁବଜାର, କଟକ—୨** ଠିକଣାରେ ଏହି ପ୍ରକାଶନୀର ସମସ୍ତ ପୁସ୍ତକ ଯଥେଷ୍ଟ ପରିମାଣରେ ଗଚ୍ଛିତ ଥାଏ ।

ପ୍ରକାଶକଙ୍କ ନିକଟରୁ ଯେ କୌଣସି ସମୟରେ ପାଞ୍ଚଟଙ୍କା ବା ତହିଁରୁ ଊର୍ଦ୍ଧ୍ୱ ମୂଲ୍ୟର ପୁସ୍ତକ ନେଲେ ବିନା ପାର୍ଶଲ ଖର୍ଚ୍ଚରେ, ମନିଅର୍ଡ଼ର ଓ ଭି. ପି. ଖର୍ଚ୍ଚ ଛାଡ଼ି ଦିଆଯାଇ ପୁସ୍ତକ ପଠାଇ ଦିଆଯାଏ ।

**ଅଗ୍ରୀମ ଦୁଇଟଙ୍କା ପଠାଇବା ଦରକାର**

ପ୍ରକାଶକ
**ଶାନ୍ତି-ନିବାସ ବାଣୀମନ୍ଦିର**
ପୁରୀଘାଟ ରୋଡ଼
**ପୋଷ୍ଟ—କଟକ—୧**

ମୁଦ୍ରାକର
**ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ର**
**ପ୍ରଭାତୀ ପ୍ରେସ୍**
**କଟକ—୨**

**ଶ୍ରୀମତୀ ଜ୍ୟୋତ୍ସ୍ନାମୟୀ ମହାନ୍ତ**

କରକମଳେଷୁ—

ଯାହାର
ହୃଦୟର ସରଳତା
ଏବେ ବି ପ୍ରାଣକୁ ଛୁଏଁ—
ସେଇ ମୋ'
**'ଅପା'** ହାତରେ—

**ବସନ୍ତ**

# ମରୀଚିକା

## ପ୍ରଥମ ଦୃଶ୍ୟ

(ଏଇ ଓଡ଼ିଶାର ମାଳ ମାଳ ଗାଁ ଭିତରେ "ଅରଗାଁ" ବି ଗୋଟିଏ । ତାହାର ଗର୍ବ କରିବାର କିଛି ନାହିଁ ବୋଲି ଦୁନିଆ ଲୋକେ କହିଲେ ବି ସେ ଗାଁର ଲୋକେ କଥା କହୁ କହୁ କାରଣ ନ ଥାଇ କହନ୍ତି—ଆମ ଗାଁ ଅରଗାଁ ପରି ଗାଁ କୋଉଠି ନାହିଁ । ଆଧୁନିକ ସଭ୍ୟତାର ଆଲୁଅ ସେ ଗାଁରେ ବାଜି ନାହିଁ ବୋଲି ଲୋକେ କହି ପାରନ୍ତି । କିନ୍ତୁ ସେଇ ଗାଁର ପିଲାମାନେ ସହରକୁ ପାଠ ପଢ଼ିବାକୁ ଓ ଗୁକିରି କରିବାକୁ ଆସିଲେଣି । ଛୁଟିରେ ଗାଁକୁ ଗଲାବେଳେ ବଜାରରୁ ଯେଉଁ ଶସ୍ତା ବହିଗୁଡ଼ିକୁ ଉପନ୍ୟାସ ବୋଲି ଭାବି ନେଇଥାନ୍ତି ସେଥିରୁ ଅରଗାଁ ଝିଏ ସହରର କଳ୍ପନା କରି ବସି ବସି ମନେ ମନେ ଜାଲ ବୁଣନ୍ତି ।

ସେଇ ଗାଁର ମୁରଲୀ ମହାପାତ୍ର । ପରିବାରରେ ତାଙ୍କୁ ମିଶାଇ ତିନିଜଣ —ସ୍ତ୍ରୀ ଆଉ ଷୋଳ ବର୍ଷର ଝିଅ ଚମ୍ପା । ଚମ୍ପା ଗାଁ ମାଇନର ସ୍କୁଲରେ ପାଠ ପଢ଼ିଛି ।

ଚମ୍ପାବୋଉଙ୍କର ବୟସ ପଇଁତିଶ ଚାଳିଶ୍ ଭିତରେ···ରଙ୍ଗ ଶ୍ୟାମଳ । ନାକରେ ନୋଥ ଓ ନୋଲକ, କାନରେ ଚଉକ ଓ ବେକରେ ଚମ୍ପାକଢ଼ି ହାର । ଏହାଛଡ଼ା ମଣିବନ୍ଧ, ହାତ, ବାହୁ, ଓ ଅଣ୍ଟାରେ ରୂପାର ଯାବଦୀୟ ଅଳଙ୍କାର । ଖଣ୍ଡେ କସ୍ତା ଶାଢ଼ୀ ଖୋଷଣି ମାରି ପିନ୍ଧିଛନ୍ତି । ଖୋଲା ପଡ଼ିଥିବା ବାଁ ହାତର ବାହୁରେ ଚିତାକୁଟା ଚିହ୍ନ । କପାଳରେ ସିନ୍ଦୂର । ଗାଲରେ ଖିଲେ ପାନ । ଖଞ୍ଜାରୁ ବାହାରି ଲଣ୍ଡଭଣ୍ଡ ହୋଇ ବାଡ଼ିଆଡ଼େ ପଶିଲେ । )

ସମୟ—ଜ୍ୟେଷ୍ଠ ମାସର ଉଦୁଉଦିଆ ଦିପହର ।

ଚମ୍ପାବୋଉ— (ବଡ଼ ପାଟିରେ) ଚମ୍ପି···ଏ ଚମ୍ପି···ଚମ୍ପି ଲୋ··· (ଟିକଏ ସ୍ୱର କମେଇ) ଟୋକି ଖଣ୍ଡିକ ଗଲା କୁଆଡ଼େ ? ···ନ ଖାଇ ନ ପିଇ ଗଲା ସେଇ ପହରରୁ ବୁଲୁଚି ତ ବୁଲୁଚି ! ଡାଆଣୀ ଚିରଗୁଣୀକି ନିଦ ଅଛି, ଯା' ଆଖିକି ନିଦ ନାହିଁ । (ହଳିଆକୁ ଆସୁଥିବାର ଦେଖି, ମୁଣ୍ଡରେ ଲୁଗା ଟାଣି ଆଣି) ଏ ବଇଷିମା, ଦେଖିଚୁ କରେ, ମୋ ଝିଅ ଏଣେ କା' ଘରଆଡ଼େ ଯାଇଚି ?

ବଇଷିମା — (ବୟସ ପଚାଶ ପାଖାପାଖି, ମୁଣ୍ଡବାଳ ପାଚି ଆସିଲାଣି । କଳା ଦେହରୁ ଝାଳ ନିଗିଡ଼ି ପଡ଼ୁଛି । ଟେକି ଟାକି ଲୁଗା ପିନ୍ଧିଛି । ଗାମୁଛାରେ ଦେହର ଝାଳ ପୋଛୁ ପୋଛୁ) କାଁ ନାଇଁତ ! ଏତେଡ଼ିଘାଏଁ ଖରାଟାରେ ଏଣେ କାଁୟା ଆଇବେ··· ଘରଟି ନାଆନ୍ତି ?

ଚମ୍ପାବୋଉ—ହ, ହ, ତୁ ଯା' ବାପା···ମୁଁ ଏମିତେ କଉଥିଲି ନା···(ମନେ ମନେ) କ'ଣ ଭାବିଥିବ ଟି ! ଝିଅଟା ଏଡ଼କି

ଅଣ୍ଡିଗାଣ୍ଠାଏ···ହଉ ସେ ଟୋକା ଆଜି ଆସୁ, ତାକୁ କୋଉ ବୋପା ସାହା ହେବ, ଦେଖିବ । ତା ପିଠିକି ଯଦି ନ ସେକିଚ ···(ପୁଣି ଖଞ୍ଜା ଆଡକୁ ଲେଉଟିଲେ)

ବଇଷିମା—(ଚାଲି ଯାଉ ଯାଉ) ମୋ ମାନେ ! କି ମା କି ଝିଅ··· ସବୁବେଳେ କଉଡେନ କାନରେ ଗଅଁଠେଇକେର ରଖିଥିବେ···ସେଇ ଝିଅ ଯେତେବେଳେ ଟୋକି ହବ ···(ଚାଲିଗଲେ)

(ଚମ୍ପିବୋଉ ଚାରିଆଡ଼ ଖୋଜି ଶେଷରେ ଦାଣ୍ଡଦୁଆରେ ଚାହାଁଲାବେଳେ ଦୁଇ ଜଣ ଟୋକା ଛୁଆଙ୍କୁ ଧରି ଚମ୍ପିର ପ୍ରବେଶ । ପାଚିଲା ଆମ୍ବପରି ଦେହର ରଙ୍ଗ । ଖଣ୍ଡେ ଆଡ଼ମଇଳା କସ୍ତା ଶାଢ଼ୀ ଗୁଡେଇ ହୋଇ ପିନ୍ଧିଛି । ମୁଣ୍ଡବାଳ ଆଲୁରା । ଇତର ଛୁଆଙ୍କ ସାଙ୍ଗରେ ଚମ୍ପିକୁ ଆସିବାର ଦେଖି ଚମ୍ପିବୋଉ ଗାଲରେ ହାତଦେଇ ଥକ୍କା ହୋଇ ବସି ପଡ଼ିଲେ ।)

ଚମ୍ପାବୋଉ—(ଦାନ୍ତ କାମୁଡ଼ି) ଏ ଚମ୍ପି ! ତତେ ଯାହା ମରଣ ହଉନାଇଁଟି ଲୋ···(ପାଖକୁ ଯାଇ ଚମ୍ପିର କାନ ଧରି ଝିଙ୍କେଇ ଦେଇ) ହେଇ ଲୋ, ସେ ମାଗନ୍ତା ଛୁଆଗୁଡ଼ାଙ୍କୁ ଛୁଉଁଛୁ ? (ଛୁଆ ଦି'ଟି ଉପରେ ଧାଇଁ ପଳେଇଲେ) ଚାଲ୍ ଟୋକି ଘର ଭିତରକୁ···

ଚମ୍ପା—(ଗୋଡ଼ ଛିଞ୍ଚାଡ଼ି) ଉଁ ଉଁ···ତୁ କାଇଁ ସବୁବେଳେ ମୋ ପିଛା ଧରିଛୁ ? ଉଁ,ଉଁ···ଖାଲି ସବୁବେଳେ ଛୁଉଁନା ଛୁଉଁନା··· ଯା ପେଇଁ ମୁଁ ଆଉ ଖେଳିବ ନାଇଁ କି ବୁଲିବ ନାଇଁ କି ପଢ଼ିବ ନାଇଁ କି ଆଉ କିଛି କରି ପାରିବ ନାଇଁ···ଖାଲି

ସବୁବେଳେ ନୂଆବୋଉ ହେଇ ଘରେ ପଶିଥିବ ।···ତବେ ହାତକଡ଼ା ଦେଇ ନେଇ ଯାଆନ୍ତେ କ, ମୁଁ ତୋର ଆଖି ଆଗରେ ଏଇ ବସି ନାଇକ ପୁଅ ଭଳି କାହାର ହାତ ଧରି ଗୁଲନ୍ତି ।

ଚମ୍ପାବୋଉ—(ମାରିବାକୁ ଚମକି ଯାଇ) ହେଇ ଲୋ ଟୋକି, ତୋର ବହପ କଣ ଦିନକୁ ଦିନ ବଢ଼ି ବଢ଼ି ଯାଉଚି, ଦେଖୁଚି ! ହଇଲୋ ?···ବାଉଁଶ ଝିଅ···କହିଲୁ କଣ ନା ମରଦଙ୍କ ହାତଧରି ବାଟ ଗୁଲିବ !!

ଚମ୍ପା—(ଚମ୍ପିବୋଉଙ୍କ ଅଲକ୍ଷ୍ୟରେ ହସି) ନ ହେଲି ଏବେ, ସେମାନଙ୍କ ଭିତରୁ ଜଣକୁ ବାହାହେଇ ପଡ଼ିବି ।

ଚମ୍ପାବୋଉ—(ଦାନ୍ତ ରଗଡ଼ି) ଟୋକି ବୋଲି ଖଣ୍ଡେ···ଏଣେ ଗୁଡିର ଦେଖ ! (ଚଟକଣା ମାରି) ହଇଲୋ ବା'ହବୁ ବା'ହବୁ କଣ ଖାଲି ଗାଇ ହଉଚୁ···ଦେଖିଥିଲୁ ?···ଦେଖିଥିଲୁ କୋଉ ମାଇକିନିଆ ଝିଅ ଏମିତି ନାଗରୀ ପିଟେ ?···(ମନେ ମନେ) ସତେ ତ ! ଆଉ କେଇଟା ଦିନରେ ସହର ପଶିବ ···ସେ ପର ଘରକୁ ଗୁଲିଗଲେ ମୁଁ ଆଉ କା' ମୁହଁ ଗୁହିଁ ଦିନ କାଟିବି ? (ବଡ଼ ପାଟିରେ) ଆମେ ବା' ହେଇଥିଲୁ ଯେ ନାକ କାନ କାଟିଦେଲେ ବି ଆମ ପାଟିରୁ କଥା ବାହାରୁ ନ ଥିଲା··· ଆଉ ଆମର ତୁ—(ଚମ୍ପିକୁ ପାଖକୁ ଟାଣି ଆଣିବା ଓ ଚମ୍ପି ଦି'ହାତରେ ପେଲି ଦେଇ ଦୂରକୁ ଘୁଞ୍ଚିଯିବା) ।

ଚମ୍ପାବୋଉ—ହଇଲୋ ଚମ୍ପି, ବା'ଘର କଥା କହିଲିବେଳେ ତତେ କାନ୍ଦ ନାଗୁନାହିଁ ? ମୋର ପାଖରେ ଏଡ଼ୁଟିରୁ ଏଡ଼େଟିଏ

ଦେଲୁ, ପୁଣି ମତେ ଛାଡ଼ —(ବାହୁନା ସ୍ୱରରେ) ମୋ ଚମ୍ପି କଲେ···ମୋ ଜୁଲୁଜୁଲୁ ମାଣିକ ଲୋ···ମତେ ଛାଡ଼ ପୁଣି କେଉଁଣେ ଗୁଳିଯିବୁ ଲୋ···ମୋ ଚମ୍ପି ସୁନ୍ଦରୀ···ମୋ ଅନ୍ଧାର ଘର କିଏ ଆଲୁଅ କରିବ ଲୋ ମୋ ଗଣ୍ଠିରତନ···

ଚମ୍ପା—(ଧମକ ଦେଇ) କୁଆଡ଼ର ମଫସଲିଆଣିଟେ···ତୋ ବାହୁନା ବନ୍ଦ କରିବୁ ତ କର ନଇଲେ ମୁଁ ଯାଉଚି ।

(ଚମ୍ପିବୋଉ ଆଖିରୁ ଲୁହ ପୋଛି ବାହୁନା ବନ୍ଦ କଲେ)

ଚମ୍ପା—(ମୁଣ୍ଡ ହଲେଇ, ମନେ ମନେ ଭାବିଲା) ଏଥର ବୋଉକୁ ପଠାଏ ଦେଇଚି···ହେଲେ ତା ଗୁଣ କୋଉଠୁ ଛାଡ଼ିବ··· ସବୁବେଳେ ତ ଏଇଆ ! ମୋ ଚମ୍ପି, ମୋ ଚମ୍ପି·· ଏଣେ ମାଡ଼ କମ୍ ନାହିଁ କି ତେଣେ ସୋଗ କମ୍ ନାହିଁ । (ବୋଉକୁ ଚାହିଁ ବଡ଼ ପାଟିରେ) ତୁ ତ ମତେ ବେଶୀ ପଢ଼େଇଲୁ ନାହିଁ କି ସହରକୁ ଛାଡ଼ିଲୁ ନାହିଁ ··· ନିଜ ଜୀବନକୁ ପୋଡ଼ି ଖାଇଲୁ ଆଉ ତା' ସାଙ୍ଗେ ସାଙ୍ଗେ ମତେ ବି ପୋଡ଼ି ଅଙ୍ଗାର କରିଦେଲୁ···ମୋ ଜୀବନକୁ ଏମିତି ଛାରଖାର କରିଦେଇ କି ଲାଭ ପାଉଚୁ ଭଲା !···ବାପା କହୁଥିଲେ କଟକର ବଡ଼ ଇସ୍କୁଲରେ ପଢ଼େଇବାକୁ···ତୁ'ଇ ସେତିକ ବନ୍ଦ କରେଇଲୁ···କହିଲୁ କଣ ନା ମାଇକିନିଆ ଝିଅ ଯେତେ ପଢ଼ିଲେ ସେଇ ଚୁଲି ମୁଣ୍ଡକୁ···

ଚମ୍ପାବୋଉ—ହଁ' ସେଇଆ ନୁହଁ ତ ଆଉ କଣ ? ଯିଏ ଯହିଁକି—

ଚମ୍ପା—(ଚିଡ଼ିଯାଇ) ହଁ, ତୁ ସେ କଥା କହିବୁ ନାହିଁକି ? (ଦାନ୍ତ କାମୁଡ଼ି) ସେଦିନ କେମିତି ବାପା ତତେ ଇଂରାଜିରେ

ଗାଳିଦେଲ 'ବୁଢ଼ବକ୍' !···ଜାଣିଛୁ 'ବୁଢ଼ବକ୍' ମାନେ କଣ ?

ଚମ୍ପାବୋଉ—(ତାଚ୍ଛଲ୍ୟ ସ୍ୱରରେ) ମଲ ଏଥିରେ ପାଠପଢ଼ାର କଣ ଅଛି ? ବୁଦ୍ଧି ଥିଲେ ବୁଝି ପାରିବ···ଏଇ ମୁଇଁ ସବୁବେଳେ ବକ ବକ ହୁଏ ବୋଲି ତ କହନ୍ତି···

ଚମ୍ପା—(ହସି ହସି ଲୋଟି ପଡ଼ି) ନାଇଁଲୋ ହୁଣ୍ଡୀ ତା ନୁହେଁ—ତା ମାନେ ଛତରଖାଇ—

ଚମ୍ପାବୋଉ - (ପାଟିରୁ କଥା ଛଡ଼େଇନେଇ) ସତେ ! ଏଡ଼େ କହିଲାବାଲଟା ! ହେଁ ଗୁଲୁଣି ପୁଣି କହେ 'ଛୁଅଁଲୋ, ତୋ ଧୂଅରେ ଗୋଟାଏ କଣା !'···ଟୋଇଲଟି ତାଙ୍କର ଘରର ବାଇଶ ନାଇଁ···ଶଶୁର ବୋଲି କଣ ଘୁଅକୁ କାନରେ ଗଞ୍ଜେଇବ ? ସେଇ ନରସିଂହ ମହାପାତ୍ର ଟୋ ଦ'ଦ'ଟା ମାଇକନା ରଖିଥିଲା···ଆଲୋ ମତେ କଣ କହୁ ଅଛପା ଅଛି କି ?

ଚମ୍ପା—(ବାଧା ଦେଇ) ହେ ବୋଉ, ତୁ କେଡ଼େ ଅସଭ୍ୟ କହିଲୁ··· ପାଠ ପଢ଼ିଥିଲେ ତୁ କେବେହେଲେ ଏମିତି କଥା କହନ୍ତୁ ନାହିଁ । (କାନ୍ଦଧରି ଅଳିକଲା ଭଳି) ହେ ବୋଉ, ତତେ ନେହୁରା ହଉଚି ଲୋ,ମତେ କଟକ ନେଇ ଗୁଲ, ମୁଁ ସେଇଠି ପଢ଼ିବ··· ମତେ ଏଇ ମଫସଲରେ ବାନ୍ଧି ରଖିଲେ ମୋ ଜୀବନ ତୋର ଆଗରେ ଝାଉଁଳ ଯିବ···ମତେ ଗୁଡ଼ଦେ ବୋଉ···ଜାଣୁ ଜାଣୁ ମତେ ଆଉ ମାଟିରେ ମିଶାଇ ଦେ'ନାହିଁ···ତୁ ଆଗ ମତେ ଜବାବ ଦେ···ନବୁ··· ?

ଚମ୍ପାବୋଉ--(ତଟସ୍ଥ ହୋଇ) ହଇ ଲୋ,ଏ'କ କଥା ! ଗାଁ ଲୋକେ ମତେ କଣ କହିବେ ? ଏତ୍ତୁଟାଏ ହେଲୁଣି, କୋଉ ରାଇଜକୁ

ପଢ଼ିବାକୁ ଯିବୁ ? —ମୁଁ ବା କେମିତି ଏଠି ଏକେଲା ରହିବି···ଏ ଖଞ୍ଜା ତ ମତେ ଖାଲି ଖାଇ ଗୋଡ଼େଇବ ଲୋ··· ମୋ ସୁନାଝିଅ ପରା! ସେମିତି ଅବୁଝା ହ ନାହିଁ···ତତେ ଆଗ ହାତକୁ ଦି'ହାତ କରିଦିଏଁ···ତେଣିକି ତୁ ତୋର ଯେତେ ଖୁସି ପଢୁଥା ।

ଚମ୍ପା ବାହା କରିବୁଟି ? ତେବେ କେମିତି ପୁଣି ଛାଡ଼ିବୁ ମତେ ? ମୁଁ ଜାଣିଚି ପରା, ତୋ ପାଖରୁ ଗଲେ ଯାଇଁ ମୋ ଜୀବନରେ ଯାହା କିଛି ହବ···

ଚମ୍ପାବୋଉ—ହଁ, ହଁ, ମୋ ପାଖରୁ ଗଲେ ତ ଖାଲି ଯୁଗକୁ ମୁଗ କରିଦବୁ···ହେଁ, "ଚଉଳ ଭାଜିଲି ଝାଇଁ, ମୁଇଁ ଧାଇଁଥାଏ ସବୁରିପେଇଁ, ମୋ ପେଇଁ କେଇ ନାହିଁ"—ହଉ, ଚାଲ ଚାଲ, ସେଣେ ଭାତ ଶୁଖି ପଡୁଛି ଚଣାଂ ଚଉଳ ହେଲାଣି, ଏଠି ବସି ଜବାବ ସୁଆଲ କରୁଚି···

(ଚମ୍ପାବୋଉ ଭିତରକୁ ଚାଲିଗଲେ । ଚମ୍ପା ସେମିତି ମୁହଁ ଫୁଲେଇ ବସିଥିଲାବେଳେ ମୁରଲୀ ମହାପାତ୍ରଙ୍କର ପ୍ରବେଶ । ଦେହରେ ଆଣ୍ଡ଼ୁମଇଳା ଧୋତି ଓ ତୋରିଆ କାମିଜ )

ମହାପାତ୍ର—(ଚମ୍ପିକୁ ଚାହିଁ ଟିକିଏ ହସି) ଚମ୍ପି, ବୋଉ ସାଙ୍ଗରେ କଳି କରିଛୁ କି ?

ଚମ୍ପା—(ଗେହ୍ଲାଳିଆ ସ୍ୱରରେ) ବାପା, ମୁଁ କଟକରେ ପଢ଼ିବି···

ମହାପାତ୍ର—(ଚାଲି ଯାଉ ଯାଉ) ହଉ ଦେଖିବା··· ତୁ ଭିତରକୁ ଆ···ବୋଉ କାହିଁ ?

(ଦୁହିଁଙ୍କର ପ୍ରସ୍ଥାନ)

—ପରଦା—

## ଦ୍ୱିତୀୟ ଦୃଶ୍ୟ

(ପ୍ରଥମ ଘଟଣାର କଣ୍ଟୁଦନ ପରେ । ସେହି ଗାଁର ପୂର୍ବ ପଶ୍ଚିମ ଘରଟି । ସମୟ ଦ୍ୱି'ପହର । ତନୋଟି ସ୍ତ୍ରୀଲୋକ ଚମ୍ପା ବୋଉଙ୍କ ଘର ଭିତରକୁ ପଶି ଆସିଲେ । ଘର ମଝି ଅଗଣାରେ ଚମ୍ପି ଓ ଚମ୍ପିବୋଉଙ୍କର ବୋଲ୍‌ବୋଲ ଲାଗିଥିବାର ଦେଖି ପାଖକୁ ଗଲେ )

ଗୁଞ୍ଜିଖିଅପା—( ଚମ୍ପି ବୋଉକୁ ଚାହିଁ ) ଆଚଲ୍ ନେତ, କଉଡ଼ି ଖେଳିଯିବୁ ବୋଲି କଇଥିଲୁ ଯେ ତୋ ବାଟ ଚାହିଁ ଚାହିଁ ଆମେ ଆସି ତୋ ଦୁଆରେ ହାବୁଡ଼ିଲୁଣି ।

ଚମ୍ପାବୋଉ (ଚିଡ଼ିଯାଇ) ଚୁଲିକି ଯାଉ ସେ କଉଡ଼ି ଖେଳ······ ଏ ଟୋକି ଖଣ୍ଡିକ ମତେ ପଗ ନାକରେ ପାଣି ଚୋବ୍ରେଇଲାଣି ······କି କଟକ ନଶା ନାଗିଚରେ ବାବା ତାକୁ··· ଖାଲି ସଦାବେଳେ—

ଚମ୍ପା—( କଥା ଛଡ଼େଇ ନେଇ ) କଉଡ଼ି ଖେଳିବ, କଉଡ଼ି ଖେଳିବ ।

ଚମ୍ପାବୋଉ—(ସରସ୍ୱତୀ ଦେଈଙ୍କୁ ଦେଖେଇ) ଆଚ୍ଛା, ଦେଖିବଟି ଘାଉଜ'ଉ······ଏମିତ ଉପରମୁହାଁ ହେଲେ, ଏଇଟା କୋଉ ଶାଶୁଘରେ ଯାଇ ଚଳିବ ?···ଖରାତରାରେ ବୁଲି ବୁଲି ତ ମୁହଁର ଶିରି ଗଲାଣି ( ଚମ୍ପାକୁ ଚାହିଁ ) ହେଇ ଲୋ, ଶୋଇବାକୁ ଯାଉଚୁ ନା ଫେଣେ ମତେ ଦେଖିବୁ···?

ଚମ୍ପା—ମୁଁ ଶୋଇବି ନାହିଁ—ତୁ ଯାଉନୁ ଶୋଇବାକୁ ?

ସରଘାଉଜ—କାଲିଁକି ମା ଝିଅ ଏତେ ନାଗିଚ ଭଲ ? ଦେ ଆସ'ମ··· କଉଡ଼ି ଦ'ବାକୁ ଆଉ ହୋଇଯାଉ······ (ଖରାକୁ ଗୃହିଁ) ବେଳ ଗଡ଼ି ଯାଉଚ ।

ଶୋଭିଅପା—କୋଉ ତୋର ଅଭାବ ଅଛି ବା ନେଉ ? କଉଥେଲୁ ପରା ତୋର କଏ ଦେଢ଼ଶୁର କଟକରେ ହାକମଗିରି କରୁଚେନ···ଯାଉନୁ ଘେରାଏ ବୁଲିଦେଇ—

ଚମ୍ପାବୋଉ—କି କଥା କଉଚ ବା ଅପା···ଯାହା କହନ୍ତିନାଇଁ ଝିଅ ମନ କରୁଚ ଗଲିଗଲି, ଟଙ୍କା ହଉଚ ସଲ୍‌ସଲ୍'···ଆଗୋ, ଦେଢ଼ଶୁର ସିନା କଟକରେ ଅଛନ୍ତି···ସେ କୋଉ ନିଜ ପେଟର ହୋଇଚନ୍ତି···ଆଉ କୁଆଡ଼େ ଯିବାକୁ ହେଲେ ନିଜ ଅଣ୍ଟାରେ ତ ପୁଣି କଣ୍ଟା ପଇସା ଗୃହି···ମୁଁ ସେଇ କଥା ଚମ୍ପିବାପାଙ୍କୁ କହିଲି 'ଆମର ତ ପୁଞ୍ଜାଏ କି ଛଅଟା ନାହାନ୍ତି ଯେ ଜଞ୍ଜାଳ କରିବେ···ଖଟଣ୍ଡି ବୋଲି ଝିଅ—

ସରଘାଉଜ—( ମୁହଁମୋଡ଼ି ଶୋଭିକୁ ଗୃହିଁ ) ସେଇଆ ନୁହଁ କି ?
ଖଣ୍ଟେ ବୋଲି ଝିଅ ···ଯାହା କହନ୍ତି —
ଅତି ସେରନ୍ଧାରେ ସେରନ୍ଧା, ଝିଅ କା'ଦେନା,
ଗୃଉଳ ପଛକେ ଖାଇବା, ଭାତ ରନ୍ଧେନା',

ଶୋଭିଅପା—ଉଁହୁଁ, ସେ କଥା ନୁହେଁ—
"ଗୃଉଳ ପଛକେ ଅଧିଆ ହଉ, ପେଜ ହଉ ବହଳିଆ,
ଘଇତା ପଛକେ ସନ୍ତୁଆ ହଉ, ଲୁଗା ହଉ ଛଉଁରିଆ"
(ହସିଦେଇ) ଟଙ୍କା ନାଇଁ ବୋଲି କଣ ଝିଅର ସରଧା ଟିକକ ମାରିଦବ ?

ଗୁଞ୍ଜିଆଅପା—ହୋଇଲେ ନେଉ, ଆଜହୁଁ କଣ ନାହିଁ ଶୁଖଉଚୁ ? ···ଚମ୍ପାକୁ ତ ପୁଣି ବାହା କରିବୁ···(ଚମ୍ପାକୁ ଗୃହିଁ ଦେଇ)

ଆଉ ଏଣିକ ବେଶିଦିନ ଘରେ ରଖିବା ଭଲ ନୁହଁ······ କଥାରେ ଅଛି 'ଝିଅ ଘିଅ' ଏତେଦିନ ପିଲା ପିଲା କହି ଗଡ଼େଇ ନେଲୁ, ଆଉ ଏଣିକ ଡେରି କର ନାହିଁ ।

ଚମ୍ପାବୋଉ—ସେଇ ଚମ୍ପିବାଘା ପରା ସବୁ ଗଡ଼ଉଚନ୍ତି ( ଚମ୍ପାକୁ ଗୁହଁଲିବା 'ପାଇଁ ଠାରିବା)

ଚମ୍ପା—ଆଖି ଠାରୁଚୁ କାଇଁକି—ତୁ ନେଜ ଯାଉନୁ ?

ଶୋଭଅପା—ଦେଖିବା'···ମିଛଟାକୁ ନଇଲେ ଏ ମା' ଝିଅ ଏତେ ଖୁଣ୍ଟାଖୁଣ୍ଟି ହୁଅନ୍ତେ ? ଆଲୋ, ଏ କି କଥା ? (ଚମ୍ପିକୁ ଗୁହଁ ) ବା'ଘର କଥା ପଡ଼ିଲେ ସଭିଙ୍କର ଟିକିଏ ନାକ ଆସେ···ଉଠି ଯାଆନ୍ତି ।

ଚମ୍ପା—ତମେ କହୁଚ ତମକୁ ନାକ ଆସୁନାହିଁ ଆଉ ମୁଁ ଶୁଣିଲି ବୋଲି ମତେ ଲାଜ ଆସିପିବ !!···ଏଇଥିପେଇଁ ପରା ମତେ ଗାଁରେ ରହିବାକୁ ଶଡ଼ିମାନ୍ତେ ( ବିରକ୍ତ ହୋଇ ଚମ୍ପା ଉଠିଗଲା)

ଗୁଞ୍ଜିଘିଅପା—ନେଡ, ତୁ ଏ ଖଣ୍ଡିକୁ ପାରିବୁ ନାହିଁ ଲୋ···ମୋ ସାନକୁହା ମାନ ତାକୁ ବେଗି ବି'ହାଡ କରିଦେ···ଆଉ ନଇଲେ—ମାଇକିନିଆ ଝିଅଙ୍କର ଏମିତି –

ସରଘଉଜ—(କଉଡ଼ିତକ ତଳେ ଗଡ଼େଇ ଦେଇ) ଦେ ଆସବା' ···ଏ ନଶାପ କରୁ କରୁ ବେଳ ଯିବ···ବି'ବାଜ ହେଲେ ହେଇ ଯାଉ ।

ଚମ୍ପାବୋଉ—ନାହିଁ ଲୋ, ଆଜ ଥାଉ···କାଲିକି ଖେଳିବା··· ମୁଁ ଯାଉଚି ଗୁଉଳ ବି'ଠା ବଭୁରେଇ ଥିଲି ଯେ—

ସରଙ୍ଗଜନ—(ମୁହଁ ଫୁଲେଇ ଉଠିପଡ଼ି) ଆସ ଆମର ଯିବା—ସେ ସବୁ ଗୁଜବ ବଜୁରେଇଚ (ଅନ୍ୟମାନଙ୍କ ହାତ ଧରି ଭିତ୍ରି ନେଇଯିବା ଓ ଚମ୍ପାବୋଉ ସେଇ ଆଡ଼କୁ ଚାହିଁ ରହିଲେ)

—ପରଦା—

## ତୃତୀୟ ଦୃଶ୍ୟ

(ପୂର୍ବ ଘଟଣାର ତିନମାସ ପରେ—ଦୁର୍ଗାପୂଜା ସମୟ ।

କଟକ ସହରର କୌଣସି ପ୍ରଧାନ ରାସ୍ତା ଉପରେ ନାଳିଚଆ ରଙ୍ଗର ନୂଆ କୋଠାଟିଏ, ରାସ୍ତା ପାଖ କୋଠରୀର ମେଲା ଝରକାରୁ ଦିଶୁଛି ଭିତରର ସାଧାରଣ ଜିନିଷପତ୍ର ଓ ଗୋଟିଏ ଡ୍ରେସିଂ ଟେବୁଲ । ଊନେଇଶ କୋଡ଼ିଏ ବର୍ଷ ବୟସର ଶ୍ୟାମଳବର୍ଣ୍ଣର ମୋଟି ଝିଅଟିଏ ନିଜର ପ୍ରସାଧନ ସାରି ଗୁଣୁଗୁଣୁ କରି ଗୀତ ବୋଲି ପଡ଼ା ଟେବଲ ଉପରୁ କଣ ଖୋଜୁଛି । ଆଇନା ସାମ୍ନାରେ, ହାତରେ ପାଉଡ଼ର ପଫ୍ ଧରି ନିବିଷ୍ଟ ମନରେ ଚମ୍ପା ନିଜ ମୁହଁ ସଜେଇବାରେ ବ୍ୟସ୍ତ । ମଝିରେ ମଝିରେ ସତର୍କ ଦୃଷ୍ଟି ରାସ୍ତା ଲୋକଙ୍କ ଉପରକୁ ଚାଲି ଯାଉଛି ଓ ଦୁହିଁଙ୍କ ଆଖି ଏକାଠି ହେଲେ ଚମ୍ପା ଓଠରେ ହସ ଫୁଟୁଛି ଦେହରେ ଗାଢ଼ ନୀଳ ରଙ୍ଗର ଶସ୍ତା ସିଲ୍କ ଶାଢ଼ୀ ଓ ବ୍ଲାଉସ ।

ସମୟ—ଉପରବେଳା ପାଞ୍ଚଟା । )

ଚମ୍ପା—ହେ ମିଲୁଅପା, ଦେଖ ଦେଖ···ଯାଃ···ଚାଲେଇଗଲା ତ··· ଦେଖିଲ ନାହିଁ···

ମିଲୁ—(ଗୀତ ବନ୍ଦ କରି, ଝରକା ପାଖକୁ ଟିକେ ଘୁଞ୍ଚିଆସି ) କାହିଁ ?···କଣ ହେଲା ?

ଚମ୍ପା—(ମିଲୁ ଉପରେ ନଜେ ଝୁଙ୍କିପଡ଼ି ରାସ୍ତାକୁ ଗୃହିଁ ) ହେଇ ସେ ଯୋଉ ଲୋକଟା ମ !··· ଏତେ଼ ବଡ୍ଭାଗ୍ଣ···ଏଇଠି ଠିଆ ହୋଇ ମତେ କେତେବେଳ ଗୃହିଁଥିଲା ପରା··· ··

ମିଲୁ—ହେଁ ହୋ···ତତେ ତ ଗଲା କଣ ସବୁଲୋକ ଖାଲି ଗୃହିଁ ଗୃହିଁ ଯାଉଛନ୍ତି !···ଏଇ ଦ'ଠା ଦନରେ ତତେ ଯେତେଲୋକ ଅନେଇଲେଣି, ଆଉ ମାସେ ରହିଗଲେ କେହି ଆଉ ବାକ ରହିବେ ନାହିଁ ଦେଖୁଚ । ( ପୁଣି ଟେବୁଲ ପାଖକୁ ଯାଇ ଖୋଜିବାରେ ଲଗିଲା )

ଚମ୍ପା—(ଲାଜ ଲାଜ ହୋଇ ) ଧେତ୍, ତମର ଯୋଉ କଥା !······ ମତେ କାଇଁକି ସମସ୍ତେ ଗୃହିଁବେ ମ ! ଆମେ କୋଉ ସହରରେ ରହିଚୁ ନା କଲେଜ ଯାଉଚୁ ଯେ ଆମକୁ ଗୃହିଁବେ ?(ଆଇନା ପାଖକୁ ଫେରିଗଲା ।

( ଏତିକବେଳେ ଚମ୍ପାବୋଉଙ୍କର ଜଳଖିଆ ଧରି ପ୍ରବେଶ ଓ ନଜ ଝିଅକୁ ମୁଗ୍‌ଧ ହୋଇ ଗୃହିଁବା—ସତେ ଅବା ଗୋଟା ଗୁଏଁ ଗିଳିଦେବେ । )

ଚମ୍ପାବୋଉ— (ମନେ ମନେ) ମୋ ଝୁଅ କେତେ଼ ସୁନ୍ଦର ସତେ ! ଗାଁରେ ତ କାଇଁ ଏତେ଼ ସୁନ୍ଦର ବେଶ ହୁଏନାଇଁ···ହି- ନ ହଉ ନ ହଉ···ସେଠି ବେଶି ବେଶ ହେଲେ ବାର ଲୋକେ ବାର କଥା କହିବେ·· ଝୁଅଟାକୁ ମୋର ଆଖିଆ କରିଦେବେ । (ବଡ ପାଟିରେ) ହେଲା ବା'···କେତେ ଦେଖି ହଉଚୁ ମୁହଁଟା । ଆସ ଏଥର ଦ' ଭଉଣୀଯାକ ଟିକିଏ କଣ ପାଟିରେ ଦେଇ ତେଣିକି ବୁଲି ଯାଉଥା (ଚମ୍ପାକୁ ଗୃହିଁ ଚମକି ପଡ଼ି ହେଇ ଲୋ, ଇଏ କଣ ? ଡେବରି ହାଣ୍ଡିଟା କଣ ଫୁଙ୍ଗୁଳା

କରିଚୁ ? ତୋ ରୂପା କାଚ କୁଆଡ଼େ ଗଲା ? (ଧାଇଁଯାଇ ଚମ୍ପା ହାତର ମଣିବନ୍ଧକୁ ଚପି ଧରିବା) ଦବୁଚିଲେ ମା ମିଲୁ ପଟେ କାଚ···ଗଳେଇ ଦିଏଁ···ଏଇଲେ ବଡ଼ବୋଉ ଦେଖିଲେ କଣ କହିବେ ?

ଚମ୍ପା— (ହାତ ଛଡ଼େଇ ନେଇ) ଯା'ମ·· ତତେ ଖାଲି ସମସ୍ତେ କହି ପକଉଛନ୍ତି···ମିଲୁଅପା କେମିତି ରହିଛନ୍ତି ?

ଚମ୍ପାବୋଉ—ହଉ ତୋର କଥା ରହିଲା ଏବେ···ଦହେଁଯାକ ଗଳେଇ ପକା (ମିଲୁ କାଚରୁ ପଟେ ପିନ୍ଧେଇ ଦେଇ) ଦେଖିଲୁ ଏଥର କେଡ଼େ ଘଟଣ ଦୁଶିଲା···ଏଥର ଆସ, ଖାଇନଅ ।

(ଦହେଁ ଖାଇ ବସିଲେ ଓ ଚମ୍ପାବୋଉ ପାଖରେ ବସି ବଢ଼େଇବାରେ ଲାଗିଲେ)

ଚମ୍ପାବୋଉ—ଚମ୍ପି, ସେ ମାଲପୁଆ କେ···ଖା' ଖଣ୍ଡେ, ଦେଖ୍ ···ଖାଲି ତରକାରି ଖାଉଚ···(ମିଲୁକୁ ଚୁହିଁ) ଏ ଟୋକି ଖଣ୍ଡକ ମତେ କଣ କମି ଦହଗଞ୍ଜ କଲଣି ? ପାଟିରେ ନ ଗୁଞ୍ଜିଲେ ପର ଖାଇବ ନାଇଁ···ହେଇ ଦେଖ୍‌ନା···ଜଳଖିଆ ସେମିତି ଥୁଆ ହେଇଚ, ପାଣି ସଇଲଣି···ଆଲୋ ଟିକେ ଖିରି ଖା'··· (ଆଉ ସମ୍ଭାଳି ନ ପାରି ଗୋଟାଗୁଏଁ କାକର ମୋଡ଼ି ମାଡ଼ି ଖିରିରେ ବୁଡ଼େଇ ଚମ୍ପା ପାଟିରେ ଗେଞ୍ଜିଦେଲେ ଓ ପାଉଡ଼ର ନେସି ହେଇଥିବା ଉପରେ ଦୁଇଗାଲ ଫୁଲେଇ ଗିଳିବାକୁ ଚେଷ୍ଟାକରି ଗାଇଁ ଗାଇଁ ହେଇ କହିଲା)

ଚମ୍ପା—ତୁ ସେମିତି ଅସନା ମସନା କଲେ ଖାଇବ ନାଇଁ କହୁ ଦଉଚ ।

ଚମ୍ପାବୋଉ—(ଚମ୍ପି ଓଠରୁ ଗଡ଼ିଆସୁଥିବା ଖିର୍ଣ୍ଣ ଝୁଅଟ କରି ହାତରେ ନେସି ଦେଇ) ଏଥର ହେଲା ତ ? (ମିଲୁକୁ ଚାହିଁ) ଆମେ ତ ସହଜରେ ମଇଳାରେ ବଢ଼ି ଆସିଲୁ···ତମ ପରି ଝିଅ, ସଙ୍ଗ ସୁତୁରି କୁଆଡ଼ୁ ହେଇ ପାରିବୁ ? (ଚାରବର କରି ଆଉ ଖଣ୍ଡେ କାକରା ଖିରିରେ ମଣ୍ଡିବାର ଦେଖି ଚମ୍ପା ବିରକ୍ତ ହେଇ ପାଣି ଧରି ଉଠି ପଡ଼ିଲା)

ଚମ୍ପାବୋଉ—ହେଇ, ହେଇ, ଏଇ ଟିକକ···ଏଇ ଟିକକ···ମୋ ମୁଣ୍ଡ ସାତଥର କରି ଖାଇବୁ···

ଚମ୍ପା—(ମୁଣ୍ଡ ହଲେଇ) ନା---

ଚମ୍ପାବୋଉ—ହଉ ହଉ, ମୁଁ ଯାଉଚି ପଚ୍ଛେ···ଖାଇଦେ'ଲେ··· ମୋ ସୁନଝିଆ ପରା···

ଚମ୍ପା—ଆଉ ନୁହେଁ···ମୋ ପେଟ ଫାଟିଯିବ···

ଚମ୍ପାବୋଉ—ତେବେ ପାଣି ନ'ଖା'···ପାଣିଟାରେ କଣ ଜୋର ଅଛି ! କିଛି ନାହିଁ । (ମିଲୁକୁ ଚାହିଁ) ଦେଖିଲ ଝିଅ···ଏମିତି ପରା ମୋ ସାଙ୍ଗରେ ସବୁବେଳେ ଲାଗିଥିବ ସିଏ···ମତେ ବଡ଼ ସନ୍ତୁଳିଲାଣି···କହିଲ ଭଲା, ଏତିକି ଟିକଏ ଖାଇ ସିଏ କେମିତି ପହରେ ବେଳେ ରହିବ ?

ଚମ୍ପା—ମୋ ଖିଆ ତୋ ଆଖିକି କେବେ ଦିଶେ ନାହିଁ···ମୁଁ ତ ଏତେ ଖାଇଲି···ମିଲୁଅପା ତ ଖାଉ ନାହାନ୍ତି--ତାଙ୍କୁ କହୁନୁ ?

ଚମ୍ପାବୋଉ---ହ'ମୁଁ କଉନାଇଁ କି ? ତୁ ଆସି ବ'···(ମିଲୁକୁ ଚାହିଁ) ଦେ ଝିଅ ତେମେ ଖାଇଦଅ···ଆମେ ଗମାର···ଆମ କଥା କାହିଁକି ତମେ ଶୁଣିବ···(ଚମ୍ପାକୁ ଦେଖେଇ) ଦେଖିଲ

କେମିତ ପାଣି ପିଇବାକୁ ବାହାରିଲଣି (ଉଠି ପଡ଼ି, ଗ୍ଲାସଟା ହାତରୁ ଛଡ଼େଇ ନେଲେ)

ମିଲୁ---(ହସି) ଚମ୍ପା, ଟିକିଏ ଖାଇଦେଲେ ତ କଥା ଛୁଣ୍ଡିଯିବ··· ଖୁଡ଼ୀ ଆଉ ଏତେ ଲଗିବେ ନାହିଁ ।

ଚମ୍ପା---(ଅନିଚ୍ଛା ସତ୍ତ୍ୱେ ପୁଣି ଆସି ବସିଲ) ଏଇଟା କପଟ ଗାଉଁଲିଟାଏ···ଯେବେ ଖାଲି ପେଟେ ପେଟେ ଖାଇଲେ ମୋର ସବୁ ହେଇଗଲ ।

ଚମ୍ପାବୋଉ—(ମିଲୁକୁ ଚାହିଁ କୈଫିୟତ ସ୍ୱରରେ) ତେମେ କଜେ କହୁବଟି ଝିଅ···ବଡ଼ବାପାଙ୍କର ବଡ଼ ଘରକୁ ଆସିଚ···ଏଠୁ ଚଲିବେଲେ ଧିଅରେ ଚଲେ ମାଉଁସ ନ ଥିଲେ ଗାଁ ଲୋକେ ମତେ କଣ କହିବେ ? କହିବେ ପଣ, ମଲ, କଣ ଖାଇବାକୁ ମିଳୁ ନ ଥିଲା କି ସେଠି ? ଏଇଟା ତ ମୋ କଥା ଆଦଉଁ ଶୁଣୁନାଇଁ···(କଆଁ ଲେଇ) ତେମେ ଟିକିଏ ଝିଅ କଥା ରଖି-ଥବ···ମୋର କୋଉ ନ'ଟା ଛ'ଟା ଅଛନ୍ତି ?···ସେଇ ବୋଲି ତ ଖଣ୍ଡେ— ।

ମିଲୁ—(ହସି ହସି ମୁଣ୍ଡ ହଲେଇ ଖୁବ ଜୋରରେ ସମ୍ମତ ଜଣେଇ) ଚମ୍ପା, ତୋ ଭାର ଏଥର ମୋ ଉପରେ ।

ଚମ୍ପା—(ମିଲୁ ହସର ଅର୍ଥ ବୁଝି) ଓଃ, ବୋଉ, ଭୁ ଯିବୁଟି ଏଠୁ ।

ଚମ୍ପାବୋଉ—ହେ ଝିଅ, ହସିଲ କି ? ଆମେ ପଣ ଗାଉଁଲି ସ୍ତିରୀ ଲୋକ···ଅପ୍ରାଧ ଆଉ କଣ ଧରୁଚ ?

ଚମ୍ପା—ହେଁ ହେଁ···ଅପ୍ରାଧ···ଅପ୍ରାଧ···କଥା ତ କହି ଆସିବନାଇଁ —ଭୁ ଯିବୁଟି ଏଠୁ

ଚମ୍ପାବୋଉ—ହଉ ତେବେ, ତେମେ ଖାଉଥା, ମୁଁ ଯାଉଚ···
(ଚମ୍ପାକୁ ଚାହିଁ) ହେ ଟୋକି, ସବୁ ଖାଇକରି ଯିବୁ, ନଚେତ
ମୋ ରାଣ ରହିଲା,···(ଚାଲିଗଲେ)

ଚମ୍ପା—(ମିଲୁ ମନକୁ ଭୁଲେଇବା ଉଦ୍ଦେଶ୍ୟରେ) ଆଚ୍ଛା ମିଲୁଅପା,
ତମ ପାଖ କୋଠାଟା କାହାର କି ?

ମିଲୁ—କାହିଁକି, କଣ ହେଲା ?

ଚମ୍ପା – ତମେ ଜାଣ ? ସେଠି ପରା କୋଡ଼ିଏ ବାଇଶି ବର୍ଷର
ଟୋକାଟାଏ ସବୁବେଳେ ଆମର ବଖରା ଝରକା ଆଡ଼କୁ
ଚାହିଁଥାଏ···ବୋଉଟା ଏଡ଼କି ଅସଭ୍ୟ, ଦେଖିଲେ ଧାଇଁ ଆସି
ଝରକା କିଳିଦିଏ···ଆଚ୍ଛା, ତମେ କହିଲ, ସେଗୁଡ଼ାକ ଅଭ-
ଦ୍ରତା ନୁହେଁ ? (ମିଲୁ ହସି ହସି ମୁଣ୍ଡ ଟେକିଲା)

ଚମ୍ପା—(ଉତ୍ସାହିତ ହୋଇ) ମୁଁ ବି ଗୁଡ଼େ ନାହିଁ···ସାଙ୍ଗେ ସାଙ୍ଗେ
ପୁଣି ଝିଙ୍କି ଖୋଲିଦିଏ···ସେଇଟା ଏତେ ବଜ୍ଜାତ···ଆଜି
ମତେ ଦେଖି ପରା ଦାନ୍ତ ନିକୁଟୁଥିଲା

ମିଲୁ---(ଗମ୍ଭୀର ହୋଇ) ସେଇଟା ଚରଣବାବୁଙ୍କ ଘର···ଏଇ
ବର୍ଷ ସେ ପିଲାଟା ବି. ଏ. ପରୀକ୍ଷା ଦବ (ହାତ ଘଡ଼ିକୁ ଚାହିଁ)
ହଉ, ଉଠ ଏଥର···ବେଳ ହୋଇ ଯାଉଚି

(ଦୁହେଁ ହାତ ଧୋଇବାକୁ ବାହାରିଗଲେ)---

—ପରଦା----

# ଚତୁର୍ଥ ଦୃଶ୍ୟ

ପରଦିନ---ସମୟ ଦିନ ଏଗାରଟା ।

(ସେହି ନାଲି କୋଠାର ଛାତ ଉପରେ ବୁଲୁଛି ଚମ୍ପା । ପିନ୍ଧିଛି ଖଣ୍ଡେ ଲାଲ ରଙ୍ଗର ଡନ୍ତବୁଣା ଶାଢ଼ୀ । ଖୋଲା ବାଳ ପିଠି ଉପରକୁ ଲମ୍ବି ପଡ଼ିଛି---ନଜର ପାଖ ଛାତ ଉପରେ । ଧୀରେ ଧୀରେ ପାଖ ଛାତ ଉପରକୁ କୋଡ଼ିଏ ବାଇଶି ବର୍ଷର ଯୁବକଟିଏ ଉଠି ଆସିଲା । ଚମ୍ପା ନିଜ ଲୁଗାକୁ ଟିକିଏ ଚାହିଁ ଦେଇ ତା ପରେ ସେ ଲୋକଟିକୁ ଚାହିଁ ଟିକିଏ ମୁରୁକି ହସିଲା । ଲୋକଟି ଏକ ଲୟରେ ଚାହିଁଛି । ନିଜକୁ ଅସ୍ୱସ୍ତି ଲାଗିବାରୁ ଚମ୍ପା ତଳକୁ ଚାହିଁ ଡାକ ଛାଡ଼ିଲା)

ଚମ୍ପା---ମିଲୁଅପା ! ମିଲୁଅପା !! ଆସ ମ ଉପରକୁ···ଆସୁନା··· କେଡ଼େ ସୁନ୍ଦର ପବନ ବହୁଚି···

(ଚମ୍ପାର ପାଟି ଶୁଣିପାରି ଚମ୍ପାବୋଉ ସିଡ଼ିରେ ଉଠି ଆସିଲେ···ବୋଉକୁ ଦେଖି ସିଡ଼ିପାଖକୁ ଦୌଡ଼ିଯାଇ)

ଚମ୍ପା---ଏ ବୋଉ, ଏ ବୋଉ, ତତେ ମୋ ରାଣ···ତୁ ଏଠିକି ଆସେ ନାହିଁ···ଗୃହଆଡ଼େ କେତେ ଭଦରଲୋକ ଅଛନ୍ତି··· ତୋ ମଫସଲଆଣୀ ବେଶ ଏଠି ଆଉ ଦେଖା ନାହିଁ ଭଲ··· ତୁ --

ଚମ୍ପାବୋଉ---(ଉଠି ଆସୁ ଆସୁ) ଭଦର ଲୋକଙ୍କ ଠେଇଁ ମୋର କଣ ଅଛି ଲୋ ? ସେ ତାଙ୍କ ଘରେ ଅଛନ୍ତି, ଆମର ସେଥିରେ କଣ ଗଲା ?

ଚମ୍ପା—ହେ ବୋଉ, ହେ ବୋଉ ତୋ କାନ୍ଧରେ କୋଉଠା ଗାମୁଛା ପଡ଼ିଛି । ଆସେ ନାହିଁ କହୁଛି,(ଅଧିକ ବ୍ୟସ୍ତ ହୋଇପଡ଼ି) ହେ ବୋଉ, ହେ ବୋଉ, ମୋ! ମୁଣ୍ଡ ଖାଇବୁ ସାତଥର ଭଉ···ହଉ ଆ, ମୋ ମରଣ ଦେଖିବୁ ଯଦି ଆ···ଭୁ ଆଇଲେ ସାଙ୍ଗେ ସାଙ୍ଗେ ମୁଁ ଏଇ ଛାତରୁ ଡେଇଁ ପଡ଼ିବ (ଦାଢ଼ ଆଡ଼କୁ ଯିବା) ।

ଚମ୍ପାବୋଉ—(ଆଉ ଆଗେଇ ନ ପାରି) ଏଁ ! ଗେଲ ଖେଳୁ ଖେଳୁ ତେଲ ବାହାର ଯିବଟି ! ଏତେ ଟୋକୀଟାଏ ହେଲୁଣି··· ଏଇଟା ସହର ବଜାର ଥାନ ; ତୋର କଣ ହେଜ ରହୁନାହିଁ କଲେ ?

ଚମ୍ପା—ଆଲେ ମୁଁ କଛି କରୁ ନାଇଁ ଲେ···ବାଳ ଶୁଖିଗଲେ ମୁଁ ଗୁଳିଯିବି··· ।

ଚମ୍ପାବୋଉ—(ବିରସ ମନରେ) ହଉ, କଣ କରୁଚୁ କରୁଥା··· ଚଳେ ବସି ମୁଁ ତତେ ଗୁହାଁଚ ଯେ (ହେଲେଇ ଯାଉ ଯାଉ ଭାବିଲେ) ଏତେ ଟୋକୀଟାଏ ହେଲଣି···ମୁଣ୍ଡକୁ ହାତ ପାଇଲଣି ପରା ! ଆଉ ବୋଲ ମାନିବେ ? ଏବ କାଲ ଯା' ହେଲଣି, ଖାଲି ଠିକ ଠିକକୁ ଆଡମ-ହଡଆ କରିବାକୁ ଧମକ ··କଆଁ ବାର ବର୍ଷରୁ ବାହା ନ କରେଇଲଟି !

ଚମ୍ପା—(ଦମ୍ ମାରି) ମା କାଳୀ କଏ ! ଏଇକ୍ଷିଣା ତ ସବୁ ସରିଥିଲ···ହୋ···ବାବାରେ ବୋଉ ଆସିଥିଲେ ମୋ ଚୁଟୀ ଉଡ଼େଇ ନେଇ ଥାଆନ୍ତା···(ହଠାତ୍ କାନ ଡେରି) ଏଁ କଣ ବୋଲୁଛି ? —"ଗୋଟା ଫେର ଗୁହାଁ ଏଣେ" (ସତର୍କ

ହୋଇଯାଇ ସେଠରେ ହସ ଟାଣି ଆଣି ଥରେ ସେ ଲୋକକୁ ଚୁହିଁ ପୁଣି ଦୃଷ୍ଟି ଫେରାଇ ନେବାର ଛଳନା କରି ମନେ ମନେ ଭାବିଲା) ଆଉ ଯଦି ମୁଁ ବାହା ହୋଇ ପାରନ୍ତି କେଉଁଠି ମଉଜରେ ସହରରେ ଦିନ କଟନ୍ତା । ମଫସଲରେ ଗୋଟେ କିଏ ରହିବ ମ ? ଚୁରିଆଡ଼େ ଖାଲି କାଦୁଅ ପଚ ପଚ, ତା ସାଙ୍ଗକୁ ପୁଣି ମାଟିଘର-ଛ୍ୟାଃ•••(ବଡ଼ ପାଟିରେ) ମିଳୁ ଅପା•••କଣ ଆସିବ ନାଇଁକି ?

ଚମ୍ପା ବୋଉ—(ତଳୁ ଥାଇ) କିଲୋ ତୁ ତଳକୁ ଆସିବା ଛାଡ଼ି କିଆଁ ସଭିଙ୍କି ଡାକି ହାକି ଉପରକୁ ନଉଚୁ ?

ଚମ୍ପା—ତୁ କାଇଁକି ସେଠି ପେଟ୍ଟ ଭଳିଆ ବସିଚୁ ? ତତେ ତ ମୁଁ ଡାକୁନାଇଁ ।

ଚମ୍ପାବୋଉ—କିଲୋ ଆସୁଚୁ ନା ପୁଣି ଯିବ ଅବକା ? •••ଗଲା ପହରେ କାଳ ନଗେଇ ବାଳ ଶୁଖଉଚ ତ ଶୁଖଉଚ ! ଆଜ୍ଞର ମୂଣ୍ଡରେ ଏକା ବାଳ ଅଛି ନା ଦୁନିଆଯାକର ଲୋକଙ୍କ ମୁଣ୍ଡରେ ଅଛି ବା ? ଇଏ କଣ ମତେ ନୂଆ ପାଠ ବଢଉଚ !!

ଚମ୍ପା—(ଥରେ ସେ ଲୋକ ଆଡ଼କୁ କଟେଇ ଚୁହିଁ) ତୁ ବୋଉ ଯୋଉଠିଥିବୁ ମଣିଷକୁ ଘରି କିଛି କରେଇ ଦବୁନାଇଁ (ଓହ୍ଲାଇ ଯିବା)

ଚମ୍ପାବୋଉ – କିଲୋ ସେଣେ ପୁଣି କୁଆଡ଼େ ଯାଉଚୁ ? (କଣ୍ଢେଇ) ଆ, ମୋ ସାଥିରେ ଦି'ଟା ଖାଇବୁ ।

ଚମ୍ପା – ଉଃ, ସ୍ବାର ଆଜ କିଛି ଚନ୍ତା ନାଇଁ ତ ! ଦିନ ରାତି ଖାଲି ଖାଇବା ଖାଇବା•••ମୁଁ ମୁଣ୍ଡ ବାନ୍ଧିବାକୁ ଯାଉଚି••• ।

— ପରଦା —

## — ପଞ୍ଚମ ଦୃଶ୍ୟ —

ଦଶ ମିନଟ ପରେ —

(ଦାଣ୍ଡକୁ ଦେଖାଯାଉଥିବା ପୂର୍ବ ପରିଚିତ କୋଠରୀ । ଡ୍ରେସିଂ ଟେବୁଲ ସାମନାରେ ଠିଆ ହୋଇ ନିଜ ମୁହଁକୁ ଚାହିଁ ଗୁଣୁ ଗୁଣୁ ହୋଇ ଗୀତ ବୋଲୁଛି ଚମ୍ପା, ଟିକିଏ ଦୂରରେ ମିଲୁ ବସି ସିଲେଇ କରୁଛି ।)

ଚମ୍ପା — (ମୁହଁ ଦେଖୁ ଦେଖୁ ଗୁଣୁ ଗୁଣୁ ସ୍ୱରରେ) "ଗୋଟି ଫେରି ଚାହାଁ ଏଣେ···

ମିଲୁ — (କାନ ଡେରି) ବାଃ, ବାଃ, ବଢ଼ିଆ ଗୀତଟିଏ ତ ! କୁଆଡ଼ୁ ଶିଖିଲୁ ମ ?

ଚମ୍ପା—(ଗେହ୍ଲା ହୋଇ) ଯାଃ ତମର ଖାଲି ସବୁବେଳେ ଥଟ୍ଟା । ( ମନେ ମନେ ଭାବିଲି ) ସତରେ ମିଲୁଅପା ବଡ଼ ଅସୁନ୍ଦରୀଟାଏ···ରଙ୍ଗ ବି କେଡ଼େ ନିରସା···ଖାଲି ପାଠ ପଢ଼ି-ଛନ୍ତି ଯାହା···ବଡ଼ବୋଉ କହୁଥିଲେ ଗୋଟାଏ ବଡ଼ ମାଜିଷ୍ଟର ସାହେବ ସାଙ୍ଗରେ ପୁଣି ବାହାଘର ଠିକଣା ହୋଇଚି···ମତେ ଯଦି ବୋଉ ଏମିତି ପଢ଼େଇଥାଆନ୍ତା, ତେବେ ମୋ ପେଇଁ କଣ ସେମିତି ବର ମିଳି ନ ଥାନ୍ତେ କି ? ମୋର ସେ ଭାଗ୍ୟ ନାହିଁ ··· ଏଇ ଗଧୀ ବୋଉ ଯୋଗୁ ରୁ ମୋର ସବୁ ଗଲା ।

(ଏତିକବେଳେ ଚାକର ନୋକ ଆସି ଦୁଆର ମୁହଁରେ ଠିଆ ହେଲା । ମଇଳା ରଙ୍ଗର ବାଙ୍ଗର ମଣିଷଟିଏ)

ନୋକ—ଦେଈ, ତମକୁ ମା ଡାକୁଚନ୍ତି···ଧୋବା କେତେବେଳୁ ବସି ରଇଚି ।

ମିଲୁ—ଯାଉଚ ଚୂଲ ।

(ନୋକ ପଛରେ ମିଲୁ ବାହାରିଗଲା ଓ ଟିକଏ ଗୁଣ୍ଡ଼ ଚମ୍ପାବୋଉ ଆସି ଘରେ ପଶିଲେ ।)

ଚମ୍ପାବୋଉ—ଚମ୍ପି ଲୋ, (ଅଣ୍ଟିରୁ ପାଚିଲା କଦଳୀ ହଳେଟି ବାହାରିକରି) ନେ ଏ କଦଳୀ ଟିକକ ଖାଇ ଦେଇଥା··· କୋଉ ପହରେ ଯାଇଁ କଣ ଟିକେ ଖାଇଥିଲୁ···ମୁହଁ ଶୁଖି ଗଲାଣି···ପେଟରେ ପିତ୍ତ ପଡ଼ିଯିବ ନଇଲେ ।

ଚମ୍ପା—(କଦଳୀ ଧରି) ବୋଉ, ମତେ ଯଦି ତୁ ଜୀଆଁଇ ରଖିବାକୁ ଚାହୁଁ, ତେବେ ମତେ ଏଇ ସହରରେ ବାହା କରିବୁ— ଚତେ ମୁଁ ଆଜହୁଁ କହି ରଖୁଚି ।

ଚମ୍ପାବୋଉ—(ଗୁନେଆ ହେଇ) କାଇଁକି କାଇଁକି—କାହାକୁ କଣ ଠିକ୍ କଲୁଣି କଲୋ ? ଏ ଚ—ମ୍ପା—! ତୋ ତୋଟି ଚିପି-ଦେବି··ମତେ ଚିନେଚୁ୍ଟିକି ? (ଟିକଏ ନରମିଯାଇ) ତୋ ହାତ ଧରୁଚି ଲୋ, ମୋ ନାଁ ଏଠି ପକାନା ଭଲା···(ପୁଣି ଗୁନେଆ ହେଇ) ମୁଁ କଅଣ କରିବଟି ଲୋ ମା···ଏ ନାଁ ପକେଇକି ମୁଁ କାଇଁକି ଏ ସହର ଥାନକୁ ଆଇଲି ଭଲା ! ହେ ମା ଜାଗୁଲେଈ, ତୋ ପାଖରେ ଗୋଟାଏ କଳା କୁକୁଡ଼ା ବଳି ଦେବି···କେମିତି ଭଲରେ ଭଲରେ ଆକୁ ନେଇ ମୁଁ ଗାଁକୁ ଫେରିଯାଏ···

ଚମ୍ପା—(ଚିଡ଼ିଯାଇ) ବେଶ୍ କଲ ନାଁ ପକେଇଲ···ମତେ କଣ ସବୁବେଳେ କାନରେ ଗଣ୍ଠି ପକେଇ ରଖି ଥାଆନ୍ତ କି ? ମୁଁ କଣ କୁଆଟିଏ ହେଇଚି ? ମୋର ବୁଦ୍ଧି ହେଲାଣି

···ତୋ ଗୋଡ଼ ଧରୁଚି ବୋଉ, ତୁ ଆଉ ମୋ ପେଇଁ ମୁଣ୍ଡ ଖେଳାନା ଭଲ୍···ମତେ ମୋ ନିଜ ବାଟରେ ଯିବାକୁ ଦେ···

ଚମ୍ପାବୋଉ—(ଗର୍ଜ୍ଜନ ଛାଡ଼ି, ଖଣ୍ଡେ ଦୂରକୁ କୁଦିପଡ଼ି) ହଇଲୋ ନିଆଁନାଗି, ମୋ ବେକରେ ତୁ ଛୁରୀ ଦେଇ ଚାଲିଯିବୁ ? ହେଇନ୍ତି କାନରେ ଗଣ୍ଠି ପକେଇଲି (ଗଣ୍ଠି ପକେଇବା) ତୁ ଯଦି ସେମିତି ବାପର ଝିଅ ହେଇଥିବୁ, ତୁ ଯିବୁ ଦେଖିବ ତୁ କେତେ ପାଣିର ମାଛ। କାଆଲି ଗୁଆଲେ···ତତେ ଗାଁରେ ନେଇ ଯଦି ଶିକୁଳି ନ ଦେଇଚି ତ ମୁଁ ଅଗଣି ଦାସ ଝିଅ ନୁହେଁ ହାଡିର ଝିଅ·· ···ଆରେ !! ଯା:ହା କହନ୍ତି ‘ଘିଅ ଖୁଆଇଲି କୁକୁରକୁ କୁକୁର ଚଢ଼ିଲା ଉପରକୁ’··· ଅଲକ୍ଷଣୀ, ମୁହଁ ଦେଲାକୁ ଆସି ମୁହଁରେ—

(ଏତିକିବେଳେ ଗୋଳମାଳ ଶୁଣି, ମିଲୁ ଓ ମିଲୁମା ଘରେ ପଶିଲେ। ତାଙ୍କ ପଛରେ ଚାକର ନୋକ। ମିଲୁମାଙ୍କର ବୟସ ପଚାଶ ପାଖାପାଖି। ଦେଖିବାକୁ କଳା; ଦେହର ଚାରିଆଡ଼େ ସୁନା ଗହଣା ଲଦି ହେଇଛନ୍ତି। ଏମାନଙ୍କୁ ଘର ଭିତରେ ପଶିବାର ଦେଖି ଚମ୍ପା ଅନ୍ୟଆଡ଼କୁ ମୁହଁ ବୁଲେଇ ଠିଆ ହେଲା।)

ମିଲୁମା—(ଚମ୍ପାବୋଉଙ୍କୁ ଚାହିଁ) କଣ ହେଲା ନେତି, କାଇଁକି କୁଆଁଟା ଉପରେ ବଗୁଚୁ ?

ଚମ୍ପାବୋଉ—(ଟିକିଏ ପ୍ରକୃତିସ୍ଥ ହୋଇ) ଆଉ .ନଇଲେ······ ଦେଖୁନା ଗା କଥାକୁ···କହୁଚି କଣ ନା—(ନୋକ ଉପରେ ଆଖି ପଡ଼ିଯିବାରୁ ଚୁପ ହୋଇଗଲେ)

ମିଲୁମା - କଣ କହୁଚ ? (ଚମ୍ପାବୋଉଙ୍କୁ ଇତସ୍ତତ ହେବାର ଦେଖି ଗୃକରକୁ ଗୃହିଁ) ନୋକ, ତୁ ଏଠି କଣ କରୁଚୁ ?

(ମୁହଁ ଶୁଖେଇ ନୋକ ଗୃଲଗଲା)

ମିଲୁମା—(ଚମ୍ପାକୁ ଗୃହିଁ ଟିକଏ ହସି) କଣ ହେଲା କଲେ ଚମ୍ପା ? କାଇଁକ ଏତେ ପାଟି ହଉଥିଲା ?

ଚମ୍ପାବୋଉ—(ଚମ୍ପାକୁ ଚୁପ ରହିବାର ଦେଖି) କହୁନୁ ଲେ ଛତରଖାଈ···କହ···ଅଲାଜୁକୀ ମର ଯାଆନ୍ତା କି, ମୁଁ ଜାଣନ୍ତ ମୋର ଆଉ କେହି ନାହାନ୍ତ···

ମିଲୁମା—(ବାଧାଦେଇ) ଆଃ, ସେମିତ କାଇଁକି ହଉଚୁ ଭଲା ! କଣ ହୋଇଚ କହୁନୁ···

ଚମ୍ପାବୋଉ—ଆ'ଉ ନଇଲେ···ଦେଖୁନ··· କୋଉ ଝିଅଟା ଦ୍ୱନ ରାତ ଖାଲ ମୁଁ ବା'ହେବ ବା'ହେବ ନାଗରା ପିଟୁଥାଏ ? ଏ ପୋଡ଼ାମୁହିଁର ସେଇ ପଦକ ଛଡ଼ା ତୁଣ୍ଡରେ ଆଉ କିଛି କଥା ନାଇଁ···

ମିଲୁ—(ହସି ହସି) ଏଥିରେ ଦୋଷଟା କଣ ହେଲା ଖୁଡ଼ୀ ? ତମେ ରାଗୁଚ କାଇଁକି ? (ଚମ୍ପାକୁ ଗୃହିଁ) ହଇଲେ ଚମ୍ପା···(ଚିବୁକ ଧର) ଗଙ୍ଗ ଶିଉଳ ! କି ଖରା ଲାଗି ତୁ ଗଲୁ ମଉଳ !

ମିଲୁମା—(ହସି ହସି) ହଇଲେ ଚମ୍ପି, ବାହାହବୁ ?···ଟିକିଏ ଶୁଣ୍ ଭଲା·· ମୋ ଉପରେ ରୁଷୁଚୁ କାହିଁକି······

ଚମ୍ପାବୋଉ ଅପା, ମୁଁ କାଲ ଗାଁ କୁ ଯାଉଚ ।

ମିଲୁମା—ଆଲୋ, ଛୁଆଟାର କଥାକୁ ଧର କଣ ଏମିତ ବାଇବଛ ଭଲଆ ହଉଚୁ ବା ?

ଚମ୍ପାବୋଉ—ନାଇଁ ଅପା, ମୋ କରମ ତ ଆଦଅରୁ ସ୍ଲେଟ... ଯାହା କହନ୍ତ ନେଇଁ, "ଏ ଦଶାରୁ ସେ ଦଶା ବଳେ, ଦଦବା ହାଣ୍ଡିରେ ପେଜ ନ ଗଲେ"...ମୋର ସେଇଆ—

(ଖିଡ଼କି ବାଟେ ନୋକିକୁ ପୁଣି ଉଙ୍କି ମାରବାର ଦେଖାଗଲା ଓ ଚମ୍ପାଛଡ଼ା ଅନ୍ୟମାନେ ତାହା ଲକ୍ଷ୍ୟ କଲେ )

ମିଲୁ—(ଚଢ଼ଯାଇ) କଣ ?

ନୋକି— ଧୋବା ସେଣେ ବର୍ କତ ହଉଚ (ଚମ୍ପା ଉଦ୍ଦେଶ୍ୟରେ ଉଣ୍ଡିବା)

ମିଲୁମା—(ମିଲୁକୁ ଆଖିଠାର) ହଉ ଦେ ଆସ, ପରେ ଶୁଣିବା ।

(ମିଲୁମା ଓ ମିଲୁ ବାହାରଗଲେ । ପଛେ ପଛେ ନୋକି)

ଚମ୍ପା —(ପୁଣି ପୂର୍ବ ତେଜ ଦେଖେଇ, ଆଖିରୁ ଲୁହ ପୋଛୁ) ତୁ ମତେ ଏଠି ଯାହା ଅପମାନ ଦେଲୁ, ମୁଁ ଯଦ ତତେ ସାତ ସେତିକି ନ ଦେଇଚ ତ, ମୁଁ ତୋ ଝିଅ ନୁହେଁ (ଦୁମ୍ ଦୁମ୍ ହୋଇ ଚମ୍ପା ବାହାରଗଲା ଓ ତା ପଛେ ପଛେ ଚମ୍ପାବୋଉ ଶୁଖିଲା ମୁହଁରେ ତାକୁ ଅନୁସରଣ କଲେ । )

—ପରଦା---

# ଷଷ୍ଠ ଦୃଶ୍ୟ

ବର୍ଷେ ପରେ—

(ଅରଗାଁ ଗ୍ରାମର ସେହି ପୂର୍ବ ପରିଚିତ ଘରଟି । ଏଥର ଟିକିଏ ବେଶି ଦରିଦ୍ରଶ୍ରୀ ଦେଖାଯାଉଛି । ତିନି ବୃଦ୍ଧୋଟି ଦରବୁଢ଼ୀ ମାଇକିନିଆ ଅଗଣାରେ ବସିଛନ୍ତି । ତାଙ୍କର ପାଖରେ ମୁଣ୍ଡରେ ହାତଦେଇ ବସିଛନ୍ତି ଚମ୍ପାବୋଉ—ଆଲୁଅ, ବାଲୁଅ, ମଇଳା, ମସିଆ ବେଶ—ସମସ୍ତ ଦିନ ଦଶଟା ଏଗାରଟା ।)

ଝୁପୁଣ୍ଟି ନାନୀ--(ବିଧବା ସ୍ତ୍ରୀଲୋକଟିଏ)--ଆଉ ଚଳିକଥାକୁ ସୁମରଣା କଲେ କଣ ହବ ଚମ୍ପାବୋଉ ? "ଅଦୃଷ୍ଟେ ଅଛି ତୋର କୋଚିଲଫଳ, ଭୁଞ୍ଜିବସି ତୁ କିପାଁ ହେଉ ବିକଳ"···ଯାହା କପାଳରେ ଅଛି—

ରେମିବୋଉ – କଥା ଛଡ଼େଇ ନେଇ)ହ---ସେଇଆ ବୁହିଁତ ଆଉ କଣ ? ଏମିତି ଝିଅ ଥେଲେ କେତେ ମଲେ କେତେ ? ···ଜାଣି ତ ବିଚ୍ଛୁଆତି ଖଣ୍ଡେ ଜନମ କରିଥେଲୁ···ମୁଁ ପରା ଆଗରୁଁ ତୁଳସୀକୁ କେତେଥର କଇଚି, ଦେଖିବ ରଇଥା, ଦିନେ ଏଇ ଚମ୍ପି ତା'ବୋଉ ମୁହଁରେ କାଳି ଦେଇଯିବ···

ଚମ୍ପାବୋଉ—(ତଳକୁ ମୁହଁପୋତି, ମୁଣ୍ଡରେ ହାତ ଦେଇ) ମରି-ଯାଇଚି···ସେଇଟା ମରିଯାଇଚି···ତା ନାଁ ଆଉ ମୋ ଆଗରେ ଧ'ନାଇଁ···ସେଇଟାର ମୁହଁ ଆଉ ମୁଁ ଚାହିଁବି ନାଇଁ···ପୋଡ଼ିଯାଉ, ନିଆଁ ନାଗିଯାଉ ସବୁ······

ମୃଷିଅପା—(ଅନ୍ୟମାନଙ୍କୁ ଚାହିଁ) ଆଉ ? ନେତିର କୋଉ କଥାର ଅପୂରୁବ ଥେଲା କଇଲ ? ସବୁ ତ ଦିନେ ତାରି ହେଇଥାନ୍ତା

···ଯାହା କହନ୍ତି 'ଯାଚଲେ ନ ଖାଏ ସର ଲବଣୀ, ମାଗି ଖାଉଥାଏ କାଞ୍ଜି ତୋରାଣି' ସେ ମଦନାକୁ ଅବକା ପାଆନ୍ତି କି, ତା ବେକରେ ଠିଆ ହୋଇ ଯାଆନ୍ତି···ସାପଖିଆ ଆଖି ଆଗୁଠାରେ କେମିତି ଧୂଳି ଦେଇଗଲା ଦେଖ ! ସେମିତିକା ପଗ୍---

ଚେମିବୋଉ---(କଥାରେ ବାଧା ଦେଇ) ମତେ ଯାହା କୁଅ ପଚ୍ଛେ, ଏଇ ଚମ୍ପିବୋଉର ସବୁ ଦୋଷ···କଇଲ ଭଲା ଗୋଖୁରକୁ ଆଣି ସେ କଅାଁ ଘରେ ମୁହଁ ଦଉଥିଲା···ଶାସ୍ତ୍ରରେ ପଗ ଅଛି "ଆଟଣା ହସ୍ତେ ଖାଉହା ଛେଦି, କେ ତାର ଅଛି ପର୍‌ତିବାଧ ।"

ଚମ୍ପାବୋଉ—ଆଲୋ ମୁଁ କଣ ଏତେ କଥା ଜାଣିଥିଲି ? ସୋଦୁରୀ ମାଇଁର ସେ ପୁତୁରା ନେଖା···ବନ୍ଧୁ ବାନ୍ଧବ ହୋଇ ବେକରେ ଏମେତି ଛୁରୀ ଦବ ବୋଲି ମୁଁ କଣ ଜାଣିଥିଲି ?

ମୁଷିଅପା—ସେ ନଅାଁ ଗିଲା କାହାର କଣ ହୁଏ ମ ? କୋଉ ଆଳିଆ ନେଖାରେ ବାଳିଆ ବଂଧୁ । ତୁ ତାକୁ ଗୋଟେ ଗଣିତାରେ ଆଣୁଛୁ !! ହେଁ, ଆଳ ଗାଇଜର କେନ୍ଦୁ, ଆଳିଆ ନେଖାରେ ବାଳିଆ ବନ୍ଧୁ, କେତେ ବାହୁନେଇ କାନ୍ଦୁ··· ତୋର ଦୋଷରୁ ତ ସବୁହେଲା···ନିଜ ଚୂଠି ତା ହାତକୁ ବଟେଇ ଦେଲୁ । ଆଉ ଅଇଛୁଣା କାମୁଡ଼ ହେଲେ କଣ ହବ ?

ଠୁପୁରୀ ନାନୀ—ତାର ଆଉ ଦୋଷ କଣ ? ସେ ତ ସେଇ ଗୁନିଆରେ ସହରରୁ ଗାଁକୁ ବଟୁ ମାଣଲପର ଦନ କେଇଟାରେ ପଳେଇ ଅଇଲା ! ହଉ ଦେ ଉଠ୍···ମଦାଏ ତୋରାଣି ପିଇବାକୁ ଗୁଆଲେ···ନ ଖାଇଲେ ନ ପିଇଲେ

ବାହାରେ ଖାଅ ରହିବ ?···ଆରେଲ୍ ଏ ପିଣ୍ଡ୍ରଟା ତ କଣ୍ଟୁ ଦୋଷ କରିନାହିଁ···ଶାସ୍ତ୍ର ପରା କହୁଚି 'ଆରେ ବଧାଡା ! ଆପେ ଖାଇଥିଲେ ପୁଅ ଘଇଡା'···ଉଠ୍ (ହାତଧରି ଉଠେଇବା)··· ପିବୁଟି ମୂଷି···ତୋରାଣି ମନ୍ଦାଏ ଏଇଠିକି ଘିନିଆ···

(ମୂଷିଅପା ତୋରାଣି ଆଣିବାକୁ ଗୁଲିଗଲେ ଓ ଚମ୍ପାବୋଉ କାନରେ ଆଖି ପୋଛୁଚଲେ)

ରେମିବୋଉ— ଆଉ ପଛକଥା ହେଜ କଣ ହବ ? ନେଡ଼ଗୁଡ଼ ତ କହୁଣୀକି ବୋହିଗଲାଣି···ଯା ଉଠ୍ ଏଥର, ମୁହଁ ହାତ ଧୋଇଆ —

(କଣ୍ଟୁବେଳ ପରେ ମୂଷିଅପା କଂସାଧରି ଆସିଲେ ଓ ସମସ୍ତେ ମିଳି ଚମ୍ପାବୋଉଙ୍କୁ ଗାଣ ନସ୍ୟମ ପକେଇ ମୁହଁ ଧୋଇବାକୁ ପଠେଇଦେଲେ)

ଠାକୁରି ନାନୀ—ଓହୋ ! କି ମା ଝିଅ ହେଇଥିଲେ ଲେ !···ମୁହଁ ଦେଇ ଦେଇ ସେଇ ଝିଅଟାକୁ ସାଇଲ ନା ଆଉ କଣ ? ଶାସ୍ତ୍ର କଣ ଭୁଲ କହୁଚି ? କହୁଚି ପରା, 'ତୁ ମତେ କଲୁ ସର୍ପେ ଜାତ, ସ୍ୱଭାବ ଗୁଡ଼ିବ କେମନ୍ତ ?

ମୂଷିଅପା—(ବଡ଼ ବଡ଼ ଆଖି ଦେଖେଇ ଫୁସ୍ ଫୁସ୍ ସ୍ୱରରେ) ଆଉ ନଇଲେ··ବାଲେଇକୁ ଶୁଖୁଆ ନୋଭ ଦେଖେଇ ଜଗି ବସିଲେ ସେ କଣ ଗୁଡ଼ିବ ? ଆଜି କାଲିକା ଟୋକା ଟାକରାଙ୍କୁ ପରା ବଳ ନାହିଁ (ଚମ୍ପାବୋଉଙ୍କୁ ଆସୁଥିବାର ଦେଖି) ହେ ଚୁପ୍ ଚୁପ୍, ସେ ଆଇଲାଣି ।

(ଆଖିରୁ ଲୁ ହ ପୋଛୁ ପୋଛୁ ଚମ୍ପାବୋଉ ଗୋଟିଏ ଗୁଣ୍ଡା ଘାତ ପାଟିକି ନେଇଛନ୍ତ)

ଚେମିବୋଉ – ଅଃ···ଚୋକଠା ଯାହା କଲ---ଧିଅରେ ପଗ ଖାଲି ଜଆଁ ଚଉଯାଉଚ !

ମୂଷିଅପା – ଅବକା ସିନା ଆମେ ତା କଥା କଉଚେଁ, ସେଣେ ସିଏ ମୁଠାଏ ଖାଇବାକୁ ପାଉଥବ କ ନାଇଁ କିଏ ଜାଣିଲ ?

ଚୂପୁଷ୍ପ ନାନୀ – ହଁ ସେଇଆ ନୁହେଁ ତ ଆଉ କଣ ?

(ଚମ୍ପାବୋଉ ଖାଇବା ବନ୍ଦକରି ଆଖିରୁ ଲୁହ ପୋଛୁଲେ)

ଚୂପୁଷ୍ପ ନାନୀ – (ଟିକିଏ ବେଳ ଗୃହିଁ) ତୁ ଚୋର ଖାଉନୁ ଲେ··· କାଇଁକି ପୁଣି ହାତଟେକି ବସିଲୁ ?

ମୂଷିଅପା – ଆଚ୍ଛା କଥା କଉଚ ନାନୀ ! ଝିଅଟାର କଥା ତେଣେ ଠିକଣା ନାଇଁ, ଏଣେ ମା ତଣ୍ଟିରେ କେମନ୍ତ ଗୁଣ୍ଡା ଗଳବ ଭଲ ?

ଚେମିବୋଉ – କି ଝିଅ ଲେ ? ଯୋଉଦନ ଘରୁ ଗୋଡ଼ କାଢ଼ିଲା, ସେଇ ଦନ ତ ତା ନାଁ ତନ ପାଞ୍ଚିରୁ ଗଲା···ଆଉ ଗୋଟାଏ କି ଝିଅ ? ସେଇ ଝିଅ ପଗ ଅଇଥ୍ଲା ଶତ୍ରୁରୁ ହେଲା · ଆଉ-

(ଦାଣ୍ଡ ଆଡ଼ୁ ମୂରଲୀ ମହାପାତ୍ର ଗଳା ଝାଡ଼ଝାଡ଼କା ଆସିଲେ । ତାଙ୍କ ଆସିବା ଦେଖି ଚେମିବୋଉ ଓ ମୂଷିଅପା ଟିକିଏ ଆଡ଼ ହୋଇଗଲେ । ଚମ୍ପାବୋଉଙ୍କୁ ପଖାଳ କଂସା ପାଖରେ ବସି କାନ୍ଦୁଥିବାର ଦେଖି ଟିକିଏ ବୁଝେଇଲା ପରି କହିଲେ )

ମହାପାତ୍ର—କାନ୍ଦୁଛ କାହିଁକି ?···ମୁଁ ଆଜ ଥାନା ପାଖକୁ ଲେଖିଛି···ଯଦ ସେମାନେ କଠକ ପାଇଥାନ୍ତ ତେବେ ସେ

ଆମକୁ ଜଣାଇବ···ଖାସ୍ ତମର ମୁହଁକୁ ଗୃହିଁ ମୁଁ ଏ କଥା କଲ ନଇଲେ – ( ଘର ଭିତରକୁ ଗୃଲିଗଲେ )

(ଚେମିବୋଉ ଓ ମୃଷିଅପା ପୁଣି ସଲଖି ବସିଲେ । ଚମ୍ପାବୋଉ କାହାକୁ କିଛୁ ନ କହି ଢ'ଢୋକ ତୋରାଣି ପିଇ ଉଠି ପଡ଼ିଲେ । ଚମ୍ପାବୋଉଙ୍କୁ ଉଠି ଚଢ଼ିବାର ଦେଖି ତିନୋଟି ସ୍ତ୍ରୀଲୋକ ଆପଣା ଭିତରେ ମୁହଁ ଗୃହାଚୁହିଁ ହୋଇ ଉଠି ଠିଆ ହେଲେ ।)

ମୃଷିଅପା—ଆମେ ଯାଉଚୁ ଲୋ ··· ବନାକୁ କର ହେଇଚ··· ବୋହୂଟା ଏକୁଟିଆ ହଇରାଣ ହଉଥିବ··· ମୁଁ ତାକୁ କହି ଆଇଥିଲି ତୁ ଥା, ମୁଁ ଅଇଛା ଆଉଚ···

( ସମସ୍ତେ ଯାଉଥିବା ବେଳେ ଚମ୍ପାବୋଉକୁ ଶୁଣେଇ ଚେମିବୋଉ କହିଲେ )

ଚେମିବୋଉ—(ନଠେଇ ନଠେଇ) କଲିକତା କଲିଚୁନ, ପରପୁଅ ଠେଇଁ ଶରଧା କଲି ସବୁ ହେଲା ଅକାରଣ···ମୁଁ ଯାଏଁ ଲୋ···ତେଣେ କଣ ହବଣି କେଜାଣି ।

(ମୂରୁକି ହସି ଜଣ ଜଣ କରି ଘରୁ ବାହାରି ଗଲେ ଓ ଚମ୍ପାବୋଉ ଆଖିର ଲୁହ ଲୁଚେଇବାକୁ ଅନ୍ୟଆଡ଼େ ଗୃଲିଗଲେ ।)

—ପରଦା—

# ସପ୍ତମ ଦୃଶ୍ୟ

ଗୃହମାସ ପରେ—

(ଚମ୍ପାବୋଉ ଖବର ପାଇଛନ୍ତି ଯେ ଚମ୍ପାର ବାହାଘର କାଳୀ ମନ୍ଦିରରେ ହୋଇଛି ବୋଲି । ଚମ୍ପା ତା ବର ସାଥିରେ କଟକରେ ଅଛି । ମନର ରାଗ ସୁଝେଇବାକୁ ଚମ୍ପାବୋଉ କଟକ ଆସିଛନ୍ତି ।

ସ୍ଥାନ – କଟକ ସହରର ବସ୍ତିକିଆ ଘରଟିଏ । ଘର ସାମନାରେ ଗୋଟିଏ ବଣ୍ଟଖୁଣ୍ଟ । ସେଇଥିରୁ ମେଞ୍ଚାଏ ଆଲୁଅ ଆସି ଦାଣ୍ଡ ଦୁଆରେ ପଡ଼ୁଛି । ସମୟ ରାତି ସାଢ଼େ ଏଗାରଟା ।

ଚମ୍ପାବୋଉ ଦାଣ୍ଡ ଦୁଆରେ ବସି କାହାକୁ ଯେମିତି ଅପେକ୍ଷା କରୁଛନ୍ତି—ବାସ୍ଥାଣୀ ବେଶ । ମୁହଁରେ ପଡ଼ୁଥିବା ଆଲୁଅରୁ ଜଣାଯାଏ, ଆଗର ଦେହ ଏକାବେଳକେ ଭାଙ୍ଗି ପଡ଼ୁଛି । ଘର ଭିତରୁ ସତର ଅଠର ବର୍ଷ ବୟସର ସ୍ତ୍ରୀ ଲୋକଟିଏ ଆସି ପାଖରେ ଠିଆ ହେଲା—ମୁଣ୍ଡରେ ସିନ୍ଦୂର, ହାତରେ ଶଙ୍ଖା ।

ଚମ୍ପା—ବୋଉ, ହେ ବୋଉ···

ଚମ୍ପାବୋଉ—କିଏଣ ଲୋ ପୋଡ଼ାମୁହାଁ ?

ଚମ୍ପା—ଓଃ,ସଦାବେଳେ ତୁ ମତେ କାହିଁକି ଭଲ ଏମିତି ଶୋଧୁଚୁ ?

ଚମ୍ପାବୋଉ – ସବାଖାଇ, ମୋ ରକତ ଦେଇ ତତେ ମଣିଷ କଲି, ତୁ ନଆଁ ଲଗି ସବୁ ଗୁଡ଼ ଇଚ୍ଛା ବର ଧିନଲୁ ?···ଛତରଖାଇ ! ତୋର ନାଗି ଗାଁରେ ମୁଣ୍ଡ ଟେକି ମୁଁ ଆଉ ବାଟ ଚାଲି ପାରୁନାହିଁ···ପାଉଥା ମଙ୍କା···ତୁ ମତେ—

ଚମ୍ପା –(ଚମ୍ପାବୋଉଙ୍କ ପାଟିରେ ହାତ ଚପି ଧରି) ହେ ବୋଉ, ତତେ ମୋ ରାଣ, ତୁ ଚୁପ ପଡ଼ ।

ଚମ୍ପାବୋଉ—(ହାତକୁ ଛାଡ଼ିଦେଇ) ଚୁପ ପଡ଼ିବ ? କାହିଁକି ଲୋ ? ତୋ ନାଗି ଉପରେ ଧରମ ଦେବତା ବଇଚ···ତୁ ମତେ –

ଚମ୍ପା – ବୋଉ ତୋ ଗୋଡ଼ ଧରୁଚି ତୁ ଚୁପପଡ଼···ଯାହା ହବାର ତ ହୋଇ ଗଲାଣି···ମୋ ନିଜ କର୍ମ ମୁଁ ଭୋଗୁଚି···ତୁ ମତେ ଆଉ ଏମିତି ଗାଳି ଦେଏନା –

ଚମ୍ପାବୋଉ—ଆଲୋ, କହୁ କଣ ଭୋଗିଲୁଣି କି ? ପରୀ କଇ ହଉଥିଲୁ ସହର ଥାନ ଘରଣ ସୁଖ··· କୋଉ ସୁଖରେ ବୁଡ଼ି ରହିଚୁ ଲୋ ଏଠି ? (ଚମ୍ପାକୁ ଗୋଡ଼ରେ ପେଲି ଦେଇ) ହଇଲୋ ମୋ କଥାର ଜବାବ ଦଉନୁ କାହିଁକି ? ଗେରସ୍ତ ପାଟିରେ ତୁଣ୍ଡି ବାନ୍ଧି ଦେଇଚି କିଲୋ ? ଗାଁ ଲୋକେ--

ଚମ୍ପା – ବୋଉ, ତୁ ମୋ ପାଖରେ ରହ – ମୁଁ –

ଚମ୍ପାବୋଉ—(ଖତେଇ ହେଇ) ହେଁ, ହେଁ, ଦାଟାପଣକୁ, ଓଠାରି ନଉଚ କଥା ବଣକୁ ! ତୋରି ଚନ୍ତାରେ ଆଜି ମୁଁ ଏତେ ସରିହେଲି···ତତେ ଖୋଜି ଖୋଜିକା ଏଠିକି ଆଇଚି··· ଭାବଚୁ ମୁଁ ସେମିତି ଫେରିଯିବି ?···ଶାପିଅ ଦେଇ ତତେ ମାରିବି···ମୁଁ ନିଜେ ମରିବି ··(ଚମ୍ପାକୁ ଗୁହାଁ)ହଇଲୋ, ଏତେ ଗହଣା ନାଇଥିଲୁ ସବୁ ସେ ଅଲପେଇସା ନିଶାପାଣି ଖାଇ ଉଡ଼େଇ ଦେଲାଣି ? (ଛୁଙ୍ଗୁଳେଇ) ସବିନାଇଁ ଲୋ ସରିନାଇଁ, ଆଉରି କେତେ ହିନମାନ ହବୁ ଦେଖିବୁ ରଇଥା···

ଚମ୍ପା—ବୋଉ, ତୋ ହାତ ଧରୁଚି ତୁ ଚୁପ ପଡ଼େ ଭଲ ! ଏଇଲେ ପିଏ ଏ କଥା ଶୁଣିଲେ ମତେ ଆଉ ବାକି ରଖିବେ

ନାଇଁ···ତୁ ସେ ମଦ ନାଁ ଧଅରେ ନାଇଁ···ସେ ନଶାଖାଆନ୍ତି
ନାହିଁ ଲୋ—ଲୋକେ ମିଛରେ କହୁଥିବେ···

ଚମ୍ପାବୋଉ—(ଉଠିପଡ଼ି, ପଛାଏ ନାଚଯାଇ) ହେଇଲୋ ରାଣ୍ଡି, ପୁଣି ମତେ ଛୁଉଁଉଚୁ ? ତୁ ମୋର ଅନ୍ତରୁ ବାହାର ପୁଣି ମୋ ଆଖିରେ ଧୂଳି ଦବୁ ! ହେଁ—ଏ ପୁଣି ବା' ହେଇଚ।··· ଆଲୋ, ତା ସୋଗ ଅଡ୍ଡେଇ ଦନକୁ···ଦେଖିବୁ ସେଇପୁଣି ତତେ କାଆଲି ଗୋଇଠା ମାର ତଡ଼ିଦବ···ଆମ୍ଭର ପଣ, ଆମ୍ଭ ସରିଗଲେ ଠାକୁଆବଣ···ସେତେବେଳକୁ କଏ ଆସି ତୋ ପିଠିରେ ପଡ଼ିବ ଦେଖିବୁ ନାଇଁକି ? ଯାଉ···ଯାଉ··· ହବୁ ନଆଁ ନାଗିଯାଉ···

(ମାତାଲ ହେଇ ଝଳି ଝଳି ମଦନା ଆସି ଦାଣ୍ଡ ପାହାଚରେ ଠିଆ ହେଲା—ଗୋରା, ଡେଙ୍ଗା ହେଇ ମଣିଷଟାଏ । ପିନ୍ଧିଛି ଲୁଙ୍ଗି ଓ ଗେଞ୍ଜି—ଗୋଡ଼ରେ କାବୁଲି ଯୋତା । ମଦନାକୁ ଦେଖି ଚମ୍ପା ତରବର କରି ମୁଣ୍ଡରେ ଲୁଗା ଦେଇ ପାଖେଇ ଗଲା) ।

ମଦନା— ଆଜ୍ଞେ···କ୍ୟା ନଆଁ ନାଗିଯିବ, ନଆଁ ନାଗିଯିବ··· ଯୁଆଁକୁ ଆଚ୍ଛା ଜାଗା ଦେଲି ମୋ ଘରେ ଖଣ୍ଡେ କାମ କରିବାକୁ ବଲନାଇଁ, ଏଣେ ପାଟିର ଜୋର୍ କମନ୍ତ ନାଇଁ (ଚମ୍ପାକୁ ଚାହିଁ) ଆଏଁ, ତୁ ଭି ଏଠି ?···ନକଲି ଏଠୁ—ଭାଗୋ—

(ଚମ୍ପା, ହ' ହାତ ଧରି ଭିତରକୁ ଟାଣିଲା)

ଚମ୍ପା—ଆ'ଲୋ ବୋଉ, ଗୁଲିଆ···କେତେ ରାତି ହେଲାଣି ଦେଖିଲୁ···

ମଦନା— (ଖଟରେ ହେଲାପରେ) ଯୁଆଁକୁ କହିଲେ ଇଏ ଡାକବ ଆଉ ଜଣକୁ···ଯାଉଚୁ ନା ଲଗେଇବ ଢ଼' ପାହାର ?

ଚମ୍ପାବୋଉ—(ଡରିଯାଇ) ଏ ଟୋକା ? ଝିଅକୁ ମୋର ତ ଘରେ ସୁଖରେ ରଖିବୁ ରେ···ସାପଖିଆ···ଏଇଟା ପୁଣି ମୋର ଜୋଇଁ !!

ମଦନ—ହାମ୍ ତୁମ୍ହାର ଜୋଇଁ ନେହିଁ—ତୁମ୍ହାରି ବେଟୀକା ଜାନ୍ ହୁଁ (ଠଳ ଠଳ ଘର ଭିତରକୁ ମୁହାଁଇଲା) ।

ଚମ୍ପାବୋଉ —(କିଛି ବୁଝି ନ ପାରି) ହଉ ହଉ, ତୋ ପାଠ ତୋ ଘରେ ରଖିଥା···ସେଇ ପାଠ ପଢ଼ିବ ବେଳେ ତ ମୋ ଝିଅ ତୋ ନାଙ୍ଗୁଡ଼ ଧଇଲା···ପଢୁଥା ଲୋ ଟୋକି ପଢୁଥା ···ଦହେଁ ମିଶି ସେଇ ପାଠ ପଢୁଥା···ଘଇତା ମାଡ଼ରେ କେଡ଼େ ସୁଖ ! କି ରାଜଭୋଗ—

ମଦନା—( ଫେରିଆସି ) ଆବେ, କଣ କହିଲୁ କଣ କହିଲୁ ? (ଗୋଡ଼ରୁ ପଟେ ଜୋତା କାଢ଼ି) ପିଠି ଗଲୁ କଲଣି କି ? ବାହାରିବୁ ତ ବାହାର, ନ ହେଲେ ଏଇ ଜୋତାରେ— (ପଛରୁ ଲୁଚିବା ଜାଗାରୁ ଚମ୍ପା ବାହାରି ଆସି, ମଦନାର ହାତ ଧରି ପକେଇ)

ଚମ୍ପା—ହେଇ, ବୋଉକୁ କିଛି କହନାଇଁ କହୁଚି···

ମଦନା—(ଚମ୍ପାକୁ ଧକ୍କା ଦେଇ) ଚୁ—ପ୍—

ଚମ୍ପାବୋଉ – (ଡେଇଁପଡ଼ି) ହଇରେ ଯୋଗିଣିଖିଆ, ଅଳଚେଇସା, କିଆଁ ଗିଲା, ମଦୁଆ ! ତୋର ଏଡ଼େ ବଢ଼ପ !! ତୁ ମୋର

ଆଗୁଣ୍ଠାରେ ମୋ ଚମ୍ପି ଧିଅରେ ହାତ ଦବୁ ! ! ତୋ ହାତ ଛିଡ଼ି ପଡ଼ୁରେ···ତତେ ଅଚନାବାଧି ଛୋଟିଯାଉରେ···

(ଉପରକୁ ହାତଯୋଡ଼ି ଓ ଗୋଟାଏ ଆଖି ମଦନାପ୍ରତି ରଖି)

ହେ ଧରମ ଦେବତା—(ପୁଣି ଥରେ ମଦନାକୁ ଗୃହାଁଦେଇ) ହେ ଧରମ ଦେବତା, ତୁ ଯଦି ସତିଅ ହୋଇଥବୁ—(ତଣ୍ଡିଆ ଖାଇ ଆଗକୁ ଝୁଙ୍କିପଡ଼ି) ମୋ ବୋଉଲେ ।

ମଦନା—(ଦୁଆର ବନ୍ଧରେ ଅଣ୍ଟାରେ ହାତ ଦେଇ) ହାଁ—ଗୃଲୁ···

ଚମ୍ପାବୋଉ—(ରାସ୍ତାକୁ ଡେଇଁପଡ଼ି) ମତେ ମାରପକେଇଲା ଲୋ··· ସବାଖିଆର ହାତ ଛିଡ଼ିପଡ଼ୁରେ···ତୋ ଆଖି ଫୁଟିଯାଉରେ···

ଚମ୍ପା—(ମଦନାକୁ ପେଲିଦେଇ ରାସ୍ତାରେ ଆସି ଠିଆହେଲା—ଗଳା ଥରୁଚ) ବୋଉ, ହେ ହେବୋଉ···ତୁ ତୁ ଖାଲି ମୋ କଥା ଟିକଏ—

ଚମ୍ପାବୋଉ—(ହାତ ଛୁଆଁଇ ଦେଇ) ଛତରଖାଇ, ତୁ ମତେ ବୁଝାଁ କଉଚ···ଆଉ ମୋର କଣ ଅଛି ଲୋ ରାଣ୍ଡି ନବାକୁ ଆଇଚୁ ? ସବୁ ଖାଇ ଶେଷକୁ—

ଚମ୍ପା—(ବୋଉ ପାଟିରେ ହାତଦେଇ) ତୁ ଆଗ ଘ-ଘରକୁ ଆ···

ଚମ୍ପାବୋଉ—ନିଆଁ ଲାଗିଯାଉ ସେ ଚୁଲି ଘରେ— କହିଲି···

ମଦନା—(ଠିଆ ହୋଇ ସବୁ ଦେଖୁଥିଲା । ଚମ୍ପାକୁ ଗୃହାଁ) ତୁ ଘରକୁ ଆ-ଚବ—ବଡ଼ ଦାଣ୍ଡରେ ବସି ସୁଆଙ୍ଗ ଲଗେଇଚ !

ଚମ୍ପା — (ଟେକି ଉଠି) ତମର ଏଡ଼େ ସାହସ ବୋଉ ଦହରେ ହାତ ଦବ !

ମଦନା— (ଆଦେଶ ସ୍ୱରରେ) ଘରକୁ ଆ କହୁଚ !

ଚମ୍ପା—(ବୁଲିପଡ଼ି ମଦନାକୁ ସିଧା ଚାହିଁ ଦୃଢ଼ଭାବରେ) ନା—

(ଚମ୍ପାର ଆଖି ଆଗରେ ମଦନା ଧଡ଼କରି କବାଟ କଲଦେଲା)

ଚମ୍ପାବୋଉ—ମୋ ହାତ ଛାଡ଼୍...ମୁଁ ଯାଏଁ ।

ଚମ୍ପା—ଚାଲ ତେବେ ତୋ ସାଙ୍ଗରେ ମୁଁ ବ ଯିବ ।

ଚମ୍ପାବୋଉ—(ଟେକି ଉଠି) ତୁ କୁଆଡ଼େ ଯିବୁ ଲୋ ପୋଡ଼ାମୁହିଁ ? ତୋ ମୁହଁକୁ ନାକ ନାଇଁ ? ଗାଁରେ ଯାଇଁ କାହାକୁ ତୋ ମୁହଁ ଦେଖେଇବୁ ? (ହାତଟାଣି ନେଇ ଶୋଧି ଶୋଧିକା ଚମ୍ପାବୋଉ ଚାଲିଗଲା ) ।

(ଠିକଏ ବେଳ ସେଇ ବଣ୍ଣଖୁଣ୍ଟ ତଳେ ଛିଡ଼ାହେଇ ଚମ୍ପା କଣ ଭାବିଲା । ତାପରେ ଧୀରେ ଆସି କବାଟରେ ହାତରଖିଲା ବନ୍ଦଅଛି । ଘନଘନ ନିଶ୍ୱାସରେ ଛାତି ତାର ଉଠୁଛି ପଡ଼ୁଛି । ଦୁଆର ଉପରକୁ ଝୁଙ୍କିପଡ଼ି ଛାତିର କୋହ ସମ୍ଭାଳିବାକୁ ଚେଷ୍ଟା କଲା—ପାରିଲାନି । ଡାକିବ ଭାବ ଥରେ ଶିକୁଳି ଉପରେ ହାତ ରଖିଲା କିନ୍ତୁ ପର କ୍ଷଣରେ ହାତ ଖସେଇ ଆଣିଲା......ଧୀରେ ଧୀରେ ପାହାଚ ଓହ୍ଲେଇ ତଳକୁ ଆସିଲା ବେଳେ ଆଲୁଅରେ ଦେଖାଗଲା--ଆଖିରେ ତାର ଦୁଇ ଧାର ଲୁହ । ଚମ୍ପାବୋଉ

ଯାଇଥିବା ବାଟରେ ଦୁଇ ଖୋଜ ଯାଇ କଣ ଯେମିତି ଭାବିଲା ତା ପରେ ବାଟ ଭାଙ୍ଗି ଚାଲିଲା ଅନ୍ୟ ଦିଗରେ । ପାଞ୍ଚ ମିନିଟ ···ଦଶ ମିନିଟ···ନନ୍ଦନା ଦୁଆର ଖୋଲି ଆସି ରାସ୍ତାକୁ ଚାହିଁଲା କେହି କୁଆଡ଼େ ନାହାନ୍ତି·········। )

ସମାପ୍ତ

# ପରିଣତି

ପୁରୀ ସହରର ଗୋଟିଏ ଅପରିଷ୍କାର ଗଳିର ଲୁଣା-ମରା ଝୁରୁଣା କୋଠା ଘରଟିଏ । ଝରକା ରେଲିଂରୁ ଖଣ୍ଡ ଖଣ୍ଡ ଲୁହା ଲୁଣି ପବନରେ ଝଡ଼ି ପଡ଼ୁଛି । ଦାଣ୍ଡ ପଟକୁ ଦୁଇଟି ବଖରା । ସେଥିରୁ ଡାହାଣ ପଟ ବଖରାଟିରେ ବସିଛନ୍ତି ରବୀନ୍ଦ୍ର କୁମାର । ବୟସ ପଇଁତିଶ ଟପିଛି । ଦୁର୍ବଳ ସ୍ୱାସ୍ଥ୍ୟ, ଆଖିରେ ଚଷମା, ଦେହରେ ଧୋତି ଓ ଗେଞ୍ଜି ।

ଘର ଭିତରେ ଖଣ୍ଡେ ଟେବୁଲ ପଡ଼ିଛି ଓ ତାର ଦୁଇ ପଟରେ ଦୁଇଖଣ୍ଡ ଚୌକି । ଟିକିଏ କଡ଼କୁ ଗୋଟିଏ ଆଲମାରୀରେ ଥାକ ଥାକ ହୋଇ ବହି ସଜା ହୋଇଛି । କାନ୍ଥକୁ ଲାଗି, ରାସ୍ତାକୁ ନ ଦିଶିଲା ପରି ଜାଗାରେ କାନ୍‌ଭାସ ଖଟଟିଏ ଭଙ୍ଗା ହୋଇ ଡେରା ହୋଇଛି । ଟେବୁଲର ବାଁ ପଟ ଅଧିକରେ ରାଜ୍ୟ ଯାକର ଆଳମାଳକା— ଅଇଁଠା ଚା' କପ ଠୁ ଆରମ୍ଭ କରି ଖଣ୍ଡିଆ ବଡ଼ ଭରା ଆସ୍‌ଟ୍ରେ, ବଡ଼ ବଣ୍ଡିଲ, ଡ଼ଆସିଲ, ଖାତାପତ୍ର, ଚଷମା ଖୋଳ, ପେପରକଟର, ପେପର ୱେଟ ଇତ୍ୟାଦି । ଖଣ୍ଡେ ଦୁ'ଖଣ୍ଡ ଦୈନିକ ପତ୍ରିକା ମଧ୍ୟ ତା' ଉପରେ ପଡ଼ିଛି । ଡାହାଣ ପଟ ଅଧିକରେ କେଇଖଣ୍ଡ କାଗଜ ସଜେଇ ରଖି ନିବିଷ୍ଟ ଚିତ୍ତରେ ରବୀନ୍ଦ୍ର କୁମାର କଣ ଲେଖି ଯାଉଛନ୍ତି ।

ସମୟ ଦିନ—ଦଶଟା ଏଗାରଟା ଭିତରେ ।

ଏତିକିବେଳେ ଜଣେ ଉଣେଇଶ କୋଡ଼ିଏ ବର୍ଷ ବୟସର ଯୁବକ ପ୍ରବେଶ କଲେ । ସାଧାରଣ ସ୍ୱାସ୍ଥ୍ୟ । ଦେହରେ ଧୋତି ପଞ୍ଜାବୀ । ଦେଖିଲେ ମନେହୁଏ ଟିକିଏ ସୌଖିନ ଧରଣର, ହାତରେ ଖଣ୍ଡେ ଚଟି ଖାତା, —ପାଦରେ ବାଥ୍‌ରୁମ୍ ସ୍ଲିପର୍ ।

ହାତରେ ଧରିଥିବା ଚଟି ଖାତା ଖଣ୍ଡିକ ପାଖ ଚୌକି ଉପରେ ରଖି ଦେଇ ସୁରେନ୍ଦ୍ର ବଡ଼ ସନ୍ତର୍ପଣରେ ଥରେ ଖଣ୍ଡିକାଶ ଦେଲେ, ଯେମିତି ରବୀନ୍ଦ୍ର କୁମାରଙ୍କ ଲେଖାରେ ବାଧା ଦେବାକୁ ଭୟ ଆସୁଚି ଅଥଚ ବାଧା ନ ଦେଇ ଅନ୍ୟ ଉପାୟ ନାହିଁ । ତଥାପି ରବୀନ୍ଦ୍ର କୁମାର ନିର୍ବିକାର ଭାବରେ ଲେଖି ଚାଲିଛନ୍ତି । ଟିକିଏ ବେଳ ଅପେକ୍ଷା କରି, ଆଉଥରେ ଗଳା ଝାଡ଼ି, ସୁରେନ୍ଦ୍ର ଆସ୍ତେ ଆସ୍ତେ ଡାକିଲେ )

'ଭାଇ—'

ରବୀନ୍ଦ୍ରକୁମାର—(ମୁହଁ ଟେକି) ଓ, ତୁ ଆସିଚୁ ! ବସ୍ ଏଠି । ମୁଁ ଏଇଟା ସାରିଦିଏଁ ।

ସୁରେନ୍ଦ୍ର—ମୁଁ ଲେଖାଟା ଆଣିଥିଲି ଯେ…

ରବୀନ୍ଦ୍ରକୁମାର--(ଲେଖୁ ଲେଖୁ) ହୁଁ…(ପୁଣି ଲେଖାରେ ଲାଗିଲେ)

(ସୁରେନ୍ଦ୍ର କିଛି ସମୟ ଏକ ଲୟରେ କାଗଜକୁ ଚାହିଁ ତା ପରେ ରବୀନ୍ଦ୍ରକୁମାରଙ୍କ ଟେଗୋର୍ ମୁଣ୍ଡଯାଏ ଥରକୁ ଥର ଆଖି ବୁଲେଇବାରେ ଲାଗିଲେ । ହଠାତ୍ ହାତ ଘଣ୍ଟାକୁ ଚାହିଁ ମୁହଁରେ ବିରକ୍ତିର ଚିହ୍ନ ଫୁଟି ଉଠିଲା, କିନ୍ତୁ ତାକୁ ଲୁଚେଇ ଓଠରେ ହସ ଟାଣି କହିଲେ)

ସୁରେନ୍ଦ୍ର--ଭାଇ, ତମେ କଣ ଏକା ଲେଖି ଚାଲିଥିବ ?···ମତେ ଟିକିଏ ସାହାଯ୍ୟ କରିବନି ?···ତମକୁ ସମସ୍ତେ ଚହ୍ନିଲେ ଜାଣିଲେ, କିନ୍ତୁ···ମତେ ତ କେହି ଚହ୍ନିଲେନି ? ସେଦିନଟି କ୍ଲାସ ଗଲି, ସାଙ୍ଗ ସାଥିମାନେ ଖୁଣ୍ଟା ଦଉଚନ୍ତି "ତମେ ଏକା ମା' ପେଟରେ ଦି'ଭାଇ ବୋଲି ବିଶ୍ୱାସ ଆସୁନି--ଜଣେ ଏତେ ବଡ଼ ଲେଖକ, ଆଉ ଆରଟି ଧାଡ଼ିଏ ବି ଲେଖି ପାରେନା"

ରବୀନ୍ଦ୍ରକୁମାର--( କଲମ ଥୋଇଦେଇ ) ମତେ କଣ କରିବାକୁ ତୁ କହୁଛୁ ?

ସୁରେନ୍ଦ୍ର--(ଗଳାରେ ସାମାନ୍ୟ ବିରକ୍ତି ଆଣି) ଆଉ କେତେଥର ସେଇ ଏକା କଥା ତମକୁ ମନେ ପକେଇ ଦଉଥିବି ? ବହି ଉପରେ ବହି ଲେଖି ତମେ ତ ଏତେ ସିନ୍ଦୁକ ପେଟଭି ଭର୍ତ୍ତି କରି ସାରିଲଣି···ତମ ନାଁ ଘରେଘରେ ଲୋକଙ୍କ ତୁଣ୍ଡ ଆଗରେ ରହୁଛି···ଆଉ···ଏଣିକି ବା ଯଦି ତମେ ନ ଲେଖ, ତମକୁ ତ କେହି ଲେଖକ ଶ୍ରେଣୀରୁ ବାହାର କରି ଦେବେନି !! ତେବେ ବୃଥା ପରିଶ୍ରମରେ ଲାଭ କଅଣ ?

ରବୀନ୍ଦ୍ରକୁମାର—(ଆଖି ଦୁଇଟା ଯେମିତି କଣ ଖୋଜି ଖୋଜିକା ବହୁତ ଦୂରକୁ ଚାଲିଗଲା । ଗଳାର ସ୍ୱରଟା ବି କେମିତି କେମିତି ଟିକିଏ ଦୋହଲିଆ ଶୁଭିଲା ) ହଁ ଲେଖକ···ତୋର ଭାଇଜ ଚାଲିଯିବାର ବାରବର୍ଷ ହୋଇଗଲା···ତାକୁଇ ନିଜ ଭିତରେ ବଞ୍ଚେଇ ରଖିବାକୁ ମୁଁ ଏ ବାରବର୍ଷ କାଳ ଚେଷ୍ଟା କରି ଆସିଛି···କେତେଦୂର ସଫଳ ହେଇଚି, ତା' ମୁଁ ନିଜେ ବି ଜାଣେନି (ଟିକିଏ ରହିଯାଇ, ସ୍ୱପ୍ନ-ବିଭୋର ଆଖିରେ ଅନେକଟା ନିଜକୁ ନିଜେ କହିଲା ପରି) ଅଥଚ···ସେଇ ମତେ

ପ୍ରଥମେ ପ୍ରେରଣା ଦେଇଥିଲା ଲେଖିବାକୁ···ତାର ସେଇ କଳା ଆଖି ଦି'ଟି ଭିତରେ କଣ ଥିଲା କେଜାଣି, ସେ ଆଖିର ଭାଷା ଯେତେ ବୁଝିବାକୁ ଚେଷ୍ଟା କରୁଥିଲି, ତା' ମୋ ପାଖରେ ସେତିକି ବେଶି ଅବୁଝା ରହି ଯାଉଥିଲା···

ସୁରେନ୍ଦ୍ର—ସେ ତ କେବେଠୁ ଗଲେଣି, ତାଙ୍କ କଥା ଆଉ କାହିଁକି ପକଉଚ ?···ବରଂ ସେହି ସମୟ ଭିତରେ ମୋ ଲେଖାଟା—

ରବୀନ୍ଦ୍ରକୁମାର—ଠିକ୍ କହୁଛ ··ବଡ଼ ଅସମୟରେ ସେ ମୋତେ ଛାଡ଼ିଗଲା··କିନ୍ତୁ··ଜାଣୁ ସୁର···ଏବେ ବି ମୋର ମନେ ହୁଏ, ସେ ମତେ ପୂରା ଛାଡ଼ି ଯାଇନି···ଯେତେବେଳେ ମୁଁ ଲେଖିବସେ ତାର ସେଇ କଳା ଆଖି ଦି'ଟିର ଉପସ୍ଥିତି ମୁଁ ନିଜ ଭିତରେ ଅନୁଭବ କରେଁ···ଯଦି ଦିନେ ଅଳସୁଆମି କରି ନ ଲେଖେ, ମନେ ହୁଏ ସେଇ ଆଖି ଦି'ଟି ଛଳ ଛଳ ହେଇ କହେ "ଲେଖିଲ ନାହିଁ ? କେମିତି ଆମ ମାତୃଭାଷା ବଞ୍ଚିବ ?--ଯଦି ଲେଖକମାନେ ଏମିତି ଅଳସୁଆ ହେଇ ଦିନ କାଟିବେ ?" ଠିକ୍ ଯେମିତି ବଞ୍ଚି ଥିଲାବେଳେ ସେ ମତେ ପେଲି ପେଲି ଠେଲି ଲେଖିବାକୁ ପଠଉଥିଲା---

ସୁରେନ୍ଦ୍ର--ଏ ସବୁ ତମର ମନର ଧାରଣା ଭାଇ । ଭାଉଜ କେବେଠୁ ଗଲେଣି--ସେ ନିଶ୍ଚେ ଆଉ କୋଉଠି ଜନ୍ମ ହୋଇ ସାରିଲେଣି ଅଥଚ ତମେ ଭାବୁଚ ତାଙ୍କ ଆଖି ଦି'ଟା ତମରି ଉପରେ ରହିଛି···ପୁଣି ଆଉ କୋଉଠି ନାହିଁ, ଏକଦମ ଯାଇ ତମ ସାହିତ୍ୟ ଉପରେ···(ଟିକିଏ ବିଦ୍ରୂପ ହସ ହସି) ଭାଇ, ତମର ଏତେ ବୟସ ହେଲା କିନ୍ତୁ ସ୍ତ୍ରୀମାନେ କଣ ଗୃହୀତା ତା' ଆଜି ଯାଏ ବୁଝିନ ··ସେମାନଙ୍କର ଆଖି ଥାଏ ଲୋକର ସ୍ୱାସ୍ଥ୍ୟ

ଓ ଧନ ଉପରେ--ସାହିତ୍ୟର ସେମାନେ କଣ ବୁଝନ୍ତି ?···
ଭାଉଜଙ୍କର ବା ଆଉ କି ସ୍ୱାର୍ଥ ଅଛି, ଆଉ ସେ ବା କାହିଁକି
ତମକୁ ଗୁହାଁ ବସିଥିବେ ? ( ଅବଜ୍ଞାରେ ହସି) ସାହିତ୍ୟକ-
ଗୁଡ଼ାକ ପ୍ରକୃତରେ ପାଗଳ··ସେମାନେ ଦିନବେଳା ବି
ଆକାଶରେ ତାରା ଦେଖନ୍ତି ।

ରବୀନ୍ଦ୍ରକୁମାର---( ବଦରୁ ଉଠିଲା ପରି ) ଏଁ ! କଣ କହିଲୁ ?
ଭାଉଜ ତୋର ଏ ସବୁ କିଛି ବୁଝି ନ ଥିଲା ? ହଁ, ତୁ ତାକୁ
ଆଉ ଚିହ୍ନି ପାରିବୁ କୋଉଠି ? ସେତେବେଳେ ତୁ ନିହାତି
ପିଲାଟାଏ···

ସୁରେନ୍ଦ୍ର---ମୁଁ ଏବେ ଚିହ୍ନି ନ ପାରିଲି କିନ୍ତୁ ବଡ଼ଭାଉଜ ଏବେ
ବି ତ' ସେଇଆ କହନ୍ତି··କେମିତି ଅଧିକାଂଶ ରାତିରେ ତମ
ଦିହିଙ୍କ ଭିତରେ ଝଗଡ଼ା ପାଇଁ କଳି ହଉଥିଲା··ଆଉ ସାନ
ଭାଉଜ କେମିତି ଝରକା ପାଖରେ ଠିଆ ହେଇ, ଲୁଚି ଲୁଚି
କାନ୍ଦନ୍ତି – ସବୁ କଥା ସେ ଜାଣନ୍ତି ଡାକିବ ତାଙ୍କୁ ? ଭାବିଛ
କେହି କିଛି ଜାଣନ୍ତି ନାହିଁ ନା ! ହେଁ, ତମ ଖବର କାହାରିକି
ଅଛପା ନ ଥିଲା ।

ରବୀନ୍ଦ୍ର କୁମାର—ଆରେ ମୂର୍ଖ,ଝରକା ପାଖରେ ଠିଆ ହେଇ ତୋ'
ସାନଭାଉଜ କେବେ କାନ୍ଦିନ । ବାହାରର ଘନ ଅନ୍ଧାର
ଭିତରେ ସେ ମେଘୁଆ ଆକାଶର ଗୋଟିକିଆ ତାରାର
ସାନ୍ନିଧ ଖୋଜେ—ବଡ଼ ଭାଉଜ କାହୁଁ ବୁଝିବ ଯେ ସେ କାହିଁକି
କାନ୍ଦେ ?

ସୁରେନ୍ଦ୍ର—ବଡ଼ ଭାଉଜ'ଙ୍କ ଏବେ ବୁଝି ନ ପାରିଲେ, ବୋଉ ବି
ତ' ସେଇଆ କହେ···କହେ ସାନବୋହୂ ଯେତେବେଳେ

ପିଲଟା ନା । ତାର ଆଗରେ ବଡ ବୋହୁକୁ ଏତେ ଗହଣା ଗାଣ୍ଠି ନାଇ, ଭଲ ଲୁଗା ପିନ୍ଧି ଆଡ଼ଯାତ ହବାର ଦେଖିଲେ ସାନର ମନ ହାଲଁପାଲଁ ହବନି ? ସେ ଗରିବ ଘରର ଝିଅ ବୋଲି କଣ ମନର ଶରଧା ଟିକକ ବି ପୋଛି ପକେଇବ ? ···ତମର ସେବକାର ନପାରିଲି ପଣ ସାନଭାଉଜଙ୍କୁ ବହୁତ ଆଘାତ ଦେଇଛି, ଭାଇ ! ସେଦିନର ଅପାରଗତା ଭାବିଛ ପୋଛି ହୋଇଯିବ ଆଜ ସାହିତ୍ୟ ଆକାଶରେ ତାଙ୍କୁ ହାତେ ଉପରେ ଆସନରେ ବସେଇଦେଲେ ? ···ବଂଚିଥିଲାବେଳେ ଯାହାଙ୍କୁ ତମେ ଖଣ୍ଡେ ନୂଆ ଗହଣା ପିନ୍ଧେଇ ପାରିଲନି, ମଲାପରେ ଆଜ କଲ୍ପନାରେ ପୁଲା ପୁଲା ହୀରା ମାଳା ତାଙ୍କର ମୁଣ୍ଡରୁ ଗୋଡ଼ଯାଏ ଖଞ୍ଜିଦେଲେ, ତମର ଅତୀତର ଅସମର୍ଥତା ଆହୁରି ବଡ଼ ହେଇ ଦିଶିବ ସିନା—

ରବୀନ୍ଦ୍ରକୁମାର—(ଆକାଶକୁ ଚାହିଁ ଅନ୍ୟମନସ୍କ ଭାବରେ କଣ ଭାବୁ ଭାବୁ ଦୀର୍ଘନିଶ୍ୱାସ ପକେଇଲେ । ତା'ପରେ ହଠାତ କିଛି ଗୋଟିଏ ଜିନିଷର ସନ୍ଧାନ ପାଇଲା ଭଳି ସୁରକୁ କହିଲେ) ଜାଣୁ ସୁର, ଏବେ ମୋର ମନେ ହୁଏ, ତୋ ଭାଉଜର ମୃତ୍ୟୁପାଇଁ ଦାୟୀ ମୁଁ ନିଜେ—

ସୁରେନ୍ଦ୍ର—ମ !! ଏ କଥା ଆଜଯାଏ ଜାଣି ନ ଥିଲ ? ସମସ୍ତେ କହନ୍ତି ତମ ଦିହିଙ୍କ ଭିତରେ ମୋଟେ ପଡ଼ୁ ନ ଥିଲା···ଆଉ ସେଇଥିପାଇଁ ତମେ ଡ଼ାକ୍ତରଙ୍କୁ କୁଆଡେ ଆଗରୁ ଶିଖେଇ ଦେଇଥିଲ, ନଇଲେ···(ଟିକିଏ ହସି) ଅବଶ୍ୟ ଲୋକମାନେ ଯାହା କହନ୍ତୁ, ମୁଁ ସେଇଆ କହୁଛି···ନଇଲେ, ବିନା ଡାକ୍ତରରେ ଛୁଆ ଜନ୍ମକରି ମା ମରୁନି, କିନ୍ତୁ ଭାଉଜ'ଉ

ମରିଗଲେ !! ଆହା ! ତାଙ୍କ କଥା ଭାବିଲେ ମୋର ବଡ଼ ଦୁଃଖ ହୁଏ ଭାଇ···ସେ ଆମ ଘରକୁ ଆସିଥିଲେ କିନ୍ତୁ କଣ୍ଟି ତାଙ୍କର ନ ଥିଲା, କଣ୍ଠ ସେ ପାଇ ନାହାନ୍ତି···ସେମିତି ଚାଲିଗଲେ ।

ରବୀନ୍ଦ୍ରକୁମାର— (ବିହ୍ୱଳ ଭାବରେ) ସୁର ! ସୁର !! ଆଉ, ଆଉ କଣ୍ଠ ତୁ କହନାରେ···ତାର କିଛି ନ ଥିଲା—ଏକଥା ମୁଁ ସହି ପାରୁନ, ତାଙ୍କୁ ସାଧାରଣ ଝିଅଙ୍କ ସ୍ତରକୁ ଟାଣି ଆଣିବାର ଦେଖି ମତେ ଯେ କେତେ ବାଧୁଛି, ତୁ ବୁଝିବୁ କୁଆଡୁ ?

ସୁରେନ୍ଦ୍ର— ହେଁ, ହେଁ, ଆଜି କାଲି ସିନା ତମେ ତାଙ୍କୁ ଏମିତି ଧ୍ୟାନ କରୁଛ, ସେତେବେଳେ ତମେ କୁଆଡ଼େ ଏକେବାରେ ଓଲଟା ଥିଲ ଭାଇ—

(ବଡ଼ଭାଉଜ ସୁଲୋଚନାଙ୍କର ପ୍ରବେଶ । ବୟସ ପଇଁତିରିଶ ପାଖା ପାଖି । ରଙ୍ଗ ଶ୍ୟାମଳ ହେଲେ ବି ମୁହଁର ରେଖ ରୂପ ସୁନ୍ଦର । ଦେହରେ ଖଣ୍ଡେ ଅାଡ଼-ମଇଳା ଶାଢ଼ୀ ଓ ଛିଟ ବ୍ଲାଉସ । ସଧବା । ବଳିଲା ପରି ଦେହ ହାତ । ଡେଙ୍ଗା ହେଇ ସ୍ତ୍ରୀଲୋକଟିଏ ।)

ସୁଲୋଚନା – (ଅଳ୍ପ ହସି ) ହଁ ଭାଇଯାକ ଏଇଠି ବସି ଗପ ଯୋଡ଼ି ଦେଇଛ···ମୁଁ ସେଣେ ଖୋଜି ହଉଛି··ବେଳ ଗଲାଣି, ଖାଇବ ଆସ···(ସୁରେନ୍ଦ୍ରକୁ ଚାହିଁ) କହ, ତମେ ବି ରବିଙ୍କ ପାଲରେ ପଡ଼ିଲଣି କି ?···(ମୁଣ୍ଡ ହଲେଇ) ଭଲ ହେଲା, ଭଲ ହେଲା··ଏଣିକି ଘରେ ଆଉ କେଉଁ କଥା ଲୁଚିବ ନାହିଁ···ଏ ଭାଇ ଯଦି ଭୁଲରେ ଅଧା ଛାଡ଼ି ଯାଇଥିବେ, ସେ ଭାଇ ଲେଖିଦେବେ···ନା କଣ କହୁଛ ?

ସୁରେନ୍ଦ୍ର — (ସୁଲୋଚନାଙ୍କୁ ଚାହିଁ) ମୁଁ ପରା ତାଙ୍କୁ ସେଇଆ କହୁଚି
…ଦିନକୁ ଦିନ ତାଙ୍କର ବଡ଼ ବଦଅଭ୍ୟାସ ହେଇ ଯାଉଚି
…ଘରର କଥାଗୁଡ଼ାକ ପଦାକୁ ବାହାର କରି ଦଉଚନ୍ତି…
ଏଇ ଦେଖୁନ…ତମେ କେବେ ଦିନେ ତାଙ୍କୁ ଗୁ' ମନା କରି
ଦେଇଥିଲ…କେବେ ଥରେ ଶୁଖିଲା ଭାତରେ ଶାଗ
ପୋଇଖାଡ଼ିର ତରକାରୀ ଦେଇଥିଲ — (ହସି) ସବୁ କଥା
ବହିରେ ଲେଖି ବାହାରେ ଧେଣ୍ଡୁରା ପିଟିଲେ ।

ରବୀନ୍ଦ୍ରକୁମାର — (ସୁରେନ୍ଦ୍ରକୁ ଚାହିଁ) ଜାଣୁ, ସେ ବହି ମୋର
ମାଷ୍ଟର ପିସ୍ । ସମସ୍ତେ କହନ୍ତି ଏମିତି ଉପନ୍ୟାସ ଓଡ଼ିଆ
ସାହିତ୍ୟରେ ନାହିଁ ବୋଲି କହିଲେ ଚଳେ ।

ସୁରେନ୍ଦ୍ର — ତା ଆଉ ହବନି ? ଲୋକଙ୍କୁ ପର ଘରର ଗଇଗୋଳ
ଶୁଣିବାକୁ ଭାରୀ ମିଠା ଲାଗେ ଯେ ।

ସୁଲୋଚନା — ଲୋକମାନେ ପଚ୍ଛଟକେ ରୋଜ ପୋଇଖାଡ଼ି ଖାଉଥିବେ
କିନ୍ତୁ ସ୍ତ୍ରୀ'ଙ୍କ ପରି —

(ସୁଲୋଚନାଙ୍କୁ କଥା ଶେଷ କରିବାକୁ ନ ଦେଇ, ଭ୍ରୂକ୍ଷେପ କରି ଚୌକିଟାକୁ ପେଲି ଦେଇ ରବୀନ୍ଦ୍ରକୁମାର ଉଠି ପଡ଼ିଲେ । ହସି ହସି କହିଲେ)

ରବୀନ୍ଦ୍ରକୁମାର — ହଉ ଚାଲ, ଚାଲ…ଯାହା ତ ରାନ୍ଧିଥିବ ପାଟିରେ
ଦେଇ ହବନି…ଖାଲି କଥାଗୁଡ଼ାକ କହିବ ବନେଇ ବନେଇ
…ଯେମିତି ଲୋକମାନେ ତମରି ପରାମର୍ଶ ନେଇ ରୋଜ
ତରକାରୀ ରାନ୍ଧନ୍ତି…

(ସୁରେନ୍ଦ୍ର ହସି ଉଠିଲେ କିନ୍ତୁ ସୁଲୋଚନାଙ୍କର ମୁହଁ ନାଲି ହୋଇଗଲା । ତିନିହେଁ ଘରୁ ବାହାରି ଆସିଲେ । )

ପରଦା —

# ଦ୍ୱିତୀୟ ଦୃଶ୍ୟ

(ସୁରେନ୍ଦ୍ରଙ୍କର ପଢ଼ାଘର । ଘରଟି ବେଶ ସଫା ସୁତୁରା । କାନ୍ଥରେ ଆଠ ଦଶଟି ଜନ ତାରକାଙ୍କର ଫଟୋ । ଘର ଗୋଟାକରେ ମାଳ ଆଲୁଅର ଜୁଆର । ଗୋଟିଏ ଟେବୁଲ ଓ ଖଣ୍ଡେ ଚୌକି ପଡ଼ିଛି । ଟେବୁଲ ଉପରେ ବହିପତ୍ର ଅଳଆ ମଳଆ ହୋଇ ପଡ଼ିଛି ।

କବିତା ଲେଖିବାର ପ୍ରେରଣା ନେଇ ସୁରେନ୍ଦ୍ର ଅଧାବୁଲାରୁ ଫେରି ଆସିଛନ୍ତି । ମଖମଲ କନାର ଧୋତି ପଞ୍ଜାବୀ ତଳୁ ଗୋରା ଦେହଟା ଅଳ୍ପ ଅଳ୍ପ ଫୁଟି ଦିଶୁଛି । ଆଖିରେ ବହୁଚେଷ୍ଟାକୃତ ଭସାଣିଆ ଚାହାଣୀ । ମୁଣ୍ଡବାଳ ଫୁର୍‌ଫୁର୍ । ଚାରିଆଡ଼େ ଥରେ ସତର୍କ ଦୃଷ୍ଟି ବୁଲେଇ ଆଣି ସୁରେନ୍ଦ୍ର ନିଜର ଦଡ଼ା ବହି ଭିତରୁ ଗୋଟିଏ ଫଟୋ ବାହାର କଲେ । କିଛି ସମୟ ଏକ ଲୟରେ ଚାହିଁବା ପରେ, ଫଟୋଟି ଛାତି ପକେଟରେ ରଖିଦେଇ ଲେଖିବାକୁ ବସିଗଲେ । କୌଣସି ଜାଗାରେ ହାତ ଝୁଣ୍ଟି ପଡ଼ିଲେ ଫଟୋଟିକୁ ପକେଟରୁ କାଢ଼ି ପ୍ରେରଣା ସଂଗ୍ରହ କରି ପୁଣି ଲେଖାରେ ବୁଡ଼ି ଯାଉଥାନ୍ତି ମଝିରେ ମଝିରେ ଗୁଣୁ ଗୁଣୁ କରି ପଢ଼ି ନିଜେ ମୁଗ୍ଧ ହୋଇ ଯାଉଥାନ୍ତି—ଓଠରେ ସଫଳତାର ହସ) ।

ହାତରେ ଫଟୋଖଣ୍ଡିକ ଧରି ସୁରେନ୍ଦ୍ର ଭାବିଲେ, 'ମୋର ପ୍ରତିଭା ଅଛି, କିନ୍ତୁ ଭଇ ସଂସାରେ ତାକୁ ଚେକ ଦବାକୁ ବସିଛନ୍ତି ··'

( ହସିଲା ମୁହଁରେ ରବୀନ୍ଦ୍ରକୁମାର ଘର ଭିତରକୁ ପଶି ଆସିଲେ - ହାତରେ ଖଣ୍ଡେ ନୂଆ ଉପନ୍ୟାସ । ସାଙ୍ଗେ ସାଙ୍ଗେ ସୁରେନ୍ଦ୍ର ଫଟୋଟି ପକେଟ ଭିତରେ ଲୁଚେଇ ଦେଲେ । ଦେଖି ନ ଦେଖିଲା ପରି ରବୀନ୍ଦ୍ର କହିଲେ )

ରବୀନ୍ଦ୍ରକୁମାର—କଣ ଲେଖୁଛୁ ଦେଖେଁ—

ସୁରେନ୍ଦ୍ର—(ଗମ୍ଭୀର ହୋଇ) ଯେତେବେଳେ ଅନ୍ୟର ସାହାଯ୍ୟ ଦରକାର ଥିଲା, ସେତେବେଳେ ତମଠୁ ପଦେ ସହାନୁଭୂତିର କଥା ଶୁଣିନି, ଆଉ ଆଜି···(ସୁରେନ୍ଦ୍ର ଖାତାଟା ବଢ଼େଇ ଦେଲେ)

ରବୀନ୍ଦ୍ରକୁମାର—(ବଡ଼ ପାଟିରେ ପଢ଼ିଲେ)

ସେଇ ବର୍ଷାଝୁମ୍ପ ତଳେ
ସମୁଦ୍ରର ବେଳାଭୂମି ପରେ
ଦେଖାଦେଲ କ୍ଷଣକର ପାଇଁ
ଆତେଗୋ ମୋର 'ସାଗରିକା ସ୍ୱାଇଁ'
ଦେହେ ଥିଲା ଆସ୍‌ମାନି ଶାଢ଼ୀ
ବେଣୀ ତବ ଉଡ଼ୁଥିଲା ଝରି
ଭାବିଲି ମୁଁ ଯିବି କି ନ ଯିବି
ତୁମ ପାଶେ ଲୋକ ଭିଡ଼ ଠେଲି ।
ଅଗଣିତ ଯୋଡ଼ା ଯୋଡ଼ା ଆଖି—

ସୁରେନ୍ଦ୍ର—(ବାଧା ଦେଇ) ଭାଇ ତମକୁ କବିତା ପଢ଼ି ଆସେନି—ଦିଅ ମତେ···

ରବୀନ୍ଦ୍ରକୁମାର—ଓ ! ବୁଝିଲି ବୁଝିଲି । ସବୁ କାମଦାମ ଗୁଣ୍ଡ, ବାବୁ ଆମର ବୋଧେ ଆଜିକାଲି ଏଇ ସାଗରିକା ସ୍ୱାଇଁ ପଛରେ ଧାଇଁଛନ୍ତି ? ତୋ କବିତାର ଛଟା ଦେଖିଲେ ଯେ କୌଣସି ଝିଅ ସମୁଦ୍ରରେ ବୁଡ଼ି ମରିବାକୁ ଯାଉଥିଲେ ବି ଉଠି ଆସିବ···ବି. ଏ. ପରୀକ୍ଷା ଆଉ କେଇ ଦିନ ରହିଲା ?

(କିଛି ଜବାବ ନ ଦେଇ ସୁରେନ୍ଦ୍ର ମୁହଁଟା ପିଠା ଖାଇଲା ପରି କଲେ । )

ରବୀନ୍ଦ୍ରକୁମାର – ( ଫଟୋ ଆଡ଼କୁ ହାତ ବଢ଼େଇ ) ସେଇ ଝିଅର ଫଟୋ ବୋଧେ···ଦେଖେଁ···

ସୁରେନ୍ଦ୍ର---(ପକେଟ ଉପରେ ହାତ ରଖି) ମୋର ଜଣେ ବନ୍ଧୁର ସ୍ତ୍ରୀ··ପିଲାମାନେ ଛଡ଼ାପଡ଼ା କଲାରୁ ମତେ ରଖିବାକୁ ଦେଇଥିଲା ।

ରବୀନ୍ଦ୍ରକୁମାର – ହଉ ଦେଖା ଟିକେ –

ସୁରେନ୍ଦ୍ର---ତାକୁ ଦେଖି ତମର କି ଲାଭ ?

(ଆଉ କିଛି ନ କହି ରବୀନ୍ଦ୍ରକୁମାର ଫେରି ଗଲେ । ସୁରେନ୍ଦ୍ର ଭଲକରି ଦେଖି ନେଲା ସେ ବସୁଛନ୍ତି କି ନାହିଁ । ଯେତେବେଳେ ଦେଖିଲା ରବୀନ୍ଦ୍ରକୁମାର ତାଙ୍କ ବଖରାରେ ପଶିଗଲେ, ପକେଟରୁ କାଢ଼ି ହାତରେ ଧରି କହିବାକୁ ଲଗିଲା )

ସୁରେନ୍ଦ୍ର—ତୁମେ ଦୁଃଖ କଲ କି ଲତିକା ?···ମୁଁ କଥା ଦେଇଛି ମୋର ଲେଖାରେ ତମକୁ ଅମର କରିବି—ଖାଲି ଟିକିଏ ଅପେକ୍ଷା କର ଡାର୍ଲିଂ ସାଗରିକା—ଇଏ ପରା ଦେଶ—କାହାକୁ ଉଠେଇବା ତ' ଦୂରର କଥା, କେହି ଯଦି ଆପେ ଉଠୁଥାଏ, ପଛଆଡ଼ୁ ଗୋଡ଼ ଭିଡ଼ି ଧରି ତାକୁ ବସେଇ ଦିଅନ୍ତି—ଭାଇଙ୍କ କଥାକୁ ଧରୁଚ କି ? ସେ ସେମିତିକା ମଣିଷ···ଭାଉଜଙ୍କ ମଲା ପରଠୁ ସେ ସିନା ଏମିତି ହୋଇ ଯାଇଚନ୍ତି···ନଇଲେ···ତମେ ଭାଇଙ୍କି ମାଫ୍ କର···ନା-ନା, ତମେ ନ ହସିଲେ ମୁଁ ଜାଣିବି ତମେ ମାଫ୍ କରିନ···(ଆଖିବୁଜି) ଆଗୋ ମୀନାକ୍ଷି, ତମର ସେଇ ଭ୍ରମର-କଳା ଆଖିରେ ମତେ ଆଉ ବାନ୍ଧିନ···ଜାଣ ତ ମୁଁ ଅତି ଦୁର୍ବଳ ମନୁଷ୍ୟ···ଭାଇ

ସିନା ଭଉଜବୋଉଙ୍କୁ ଅବହେଳାରେ ମାରିଦେଲେ, କିନ୍ତୁ ମୁଁ ତୁମକୁ ବଞ୍ଚେଇ ରଖିବ ଚିରଦିନ···ନା-ନା, ଭୁଲ୍‌ କହିଲି ଅମର କରିବ···

(ସୁରେନ୍ଦ୍ରଙ୍କ ମୁଦା ଆଖିରୁ ଦୁଇ ଟୋପା ଲୁହ ଗଡ଼ିଆସିଲା··· ଫଟୋ ଖଣ୍ଡିକ ଧ୍ୟାନରେ ଧରା ହୋଇଚି—ଯେମିତି ଆଖି ଖୋଲିଲେ ବିନା ବାଧାରେ ସେ ପ୍ରଥମେ ତାକୁହିଁ ଦେଖିବେ । ଏତିକିବେଳେ ଗୋଟିଏ କଂସା ଥାଳରେ କିଛି ଶୁଖିଲା ରୁଟି ଓ ତରକାରି ଏବଂ ଅନ୍ୟ ହାତରେ ଗିଲାସେ ପାଣି ଧରି ସୁଲୋଚନା ଘର ଭିତରକୁ ପଶିଲେ । ଧ୍ୟାନ-ମଗ୍ନ ସୁରେନ୍ଦ୍ର ବଡ଼-ଭଉଜଙ୍କର ଉପସ୍ଥିତି ବୁଝି ପାରିନାହାନ୍ତି । ବାଅର ଆଖିରେ ଲୁହ ଦେଖି ସୁଲୋଚନା ପ୍ରଥମେ ଚମକି ପଡ଼ିଲେ···ତା'ପରେ ତାଙ୍କର ଆଖି ସୁରେନ୍ଦ୍ରର ହାତ ଓ ଆଖି ଉପରେ କ୍ରମାନ୍ୱୟରେ ବୁଲିବାକୁ ଲାଗିଲା ···ଅତି ସନ୍ତର୍ପଣରେ ଧରିଥିବା ଜିନିଷ ତଳେ ରଖିଦେଇ ଫଟୋ ଖଣ୍ଡିକ ହାତରୁ ଟାଣିନେଲେ, ଆଉ ସାଙ୍ଗେ ସାଙ୍ଗେ ସୁରେନ୍ଦ୍ର ହାଉଳି ଖାଇ ଉଠିଲେ)

ସୁରେନ୍ଦ୍ର—(ଦୁଇ ହାତ ବଢ଼େଇ) ସାଗରିକା ! ସାଗରିକା !! ଓଃ ଖସିଗଲ ! ନା-ନା-ତମେ ମୋର, ତମେ ମୋର (ଗୁହିଁଦେଇ, ନିଜର ଭୁଲ ବୁଝିପାରି, ଟିକିଏ ପ୍ରକୃତିସ୍ଥ ହୋଇ) ଭଉଜ'ଉ, ଏ କଣ କଲ ? ଦିଅ, ସେଇଟା ମତେ ଦେଇଦିଅ···ସେଇଟା ମୋର ନୁହିଁ, ଆଉ ଜଣକର (ଫଟୋଟି ସୁଲୋଚନାଙ୍କ ହାତରୁ ଟାଣି ନେଇ) ଇସ୍, ଏଗୁଡ଼ାକ କଣ ଲଗେଇ ଦେଲ···(ଶୁଙ୍ଘି, ମୁହଁ ବିରକ୍ତ କରି) ଛିଃ—ହଳଦିଗୁଡ଼ାକ···ତମର କଣ

ଏତିକ ଟିକିଏ ଜ୍ଞାନ ନାହିଁ ? (ରୁମାଲ କାଢ଼ି ସୁରେନ୍ଦ୍ର ଲଗିଥିବା ଦାଗ ଛଡ଼େଇବାକୁ ଚେଷ୍ଟାକଲେ )

ସୁଲୋଚନା—(ମୁରୁକି ହସି) ସୁରି, ତମେ ଯାକୁଇ ବା'ହବ ?

ସୁରେନ୍ଦ୍ର—ଆଃ, କାଇଁକି ମିଛରେ ପାଟିଟାଏ କରୁଚ କହିଲ ?

ସୁଲୋଚନା—ନାଇଁମ, କେହି ନାହାନ୍ତି···ମୁଁ କହୁଥିଲି କଣ କି··· ଯାକୁ ବା'ହେଲେ, ସେ ଦିନ ରାତି ତମକୁ କାଖେଇ ବୁଲେଇ ବୁଲନ୍ତା···ପଟେ ବସ୍ତାରେ ଲୁଗା ଗୁରେଇ ଦେଲେ ଯେମିତି ଦିଶିବ,ଇଏ ତ କଣ ଅବିକଳ ସେଇମିତି ଦିଉଚ··ବାଙ୍ଗରିଟିଏ (ହସ ଚାପିବାକୁ ସୁଲୋଚନା ମୁହଁରେ ଲୁଗା ଦେଲେ)

ସୁରେନ୍ଦ୍ର—(ତାଚ୍ଛଲ୍ୟ ଭାବରେ) ନାଇଁ, ତମରି ପେରିକା କାଉଡାଙ୍ଗ ହାତ ଗୋଡ଼ ନେଇ ତାଳଗଛ ପରି ହେଇଥିଲେ ଭଲ ହେଇଥା'ନ୍ତା—ବାର ଦିନରେ ତେର ବେମାରି—ହୁଁ, କ'ଣ ଆଉ କହିବଟି ?

ସୁଲୋଚନା—(ହସି ହସି) ଆମେ ତ ସହଜେ ମଫସଲି ଝିଅ, ଆମଠି ଏତେ ସୁନ୍ଦର-ପଣ ଖୋଜିଲେ କାହୁଁ ପାଇବ ? କଙ୍କଡ଼ା ବଗୁର ନାହୁଡ଼ ପରି ଦ'ପଟକୁ ଦ'ଟା ବେଣି ଏମାନଙ୍କ ପରି ଆମେ କଣ ଗୁଡ଼ ପାରିବୁ ? ଗୋଖଣ୍ଡେ ପେଟ ଦେଖେଇ ମରଦଙ୍କ ସାମନାରେ ଚାଲି ପାରିବୁ ? ଜାମାରେ ଏତେ କଣା ରଖି—

ସୁରେନ୍ଦ୍ର—(ସାମାନ୍ୟ ବିରକ୍ତି ସହ) ଅ, କ'ଣ ଗୁଡ଼ାଏ ଗପି ଯାଉଚ···ଇଏ ପରା ନୂଆ ଫେସନ୍···ସିନେମା ଷ୍ଟାରମାନଙ୍କୁ ଦେଖିନ ? ···ବଡ଼ଭାଇ ତ ତମକୁ ମରହଟିଆଣୀ କରି

ଘରେ ରଖିବେ · ହଉ, ଯା' ହେଲା ହେଲା, ତମେ ଏଥର ଏଠୁ ଯିବଟି—

ସୁଲୋଚନା—ତେମେ ଖାଇବସ, ମୁଁ ଯାଉଚ ··ସକାଳେ କୋଉ ପହରେ ଯାଇଁ କ'ଣ ଗଣ୍ଡାଏ ଆଖିରେ କାନରେ ଗୁଂଜଦେଇ ଉଠିଗଲ (ତଳୁ ଥାଳ ଓ ଗିଲାସ ଆଣି ଟେବୁଲ ଉପରେ ରଖିଲେ)

ସୁରେନ୍ଦ୍ର—ଦିନସାରା ଖାଲି ଖାଇବା ଚିନ୍ତା କଲେ ଜୀବନରେ ମଣିଷ କିଛି କରିପାରେ ନାହିଁ (ଫଟୋଟିକୁ ଯତ୍ନରେ ପକେଟ ଭିତରେ ରଖି, ସାମାନ୍ୟ ପାଣିରେ ହାତ ପିଛୁଳେଇ ନେଇ ଖାଇ ବସିଲେ )

(ଅନ୍ୟ ଖଞ୍ଜାରୁ ବିଧବା ଶାଶୁଙ୍କର ପାଟି ଶୁଭିଲା) ବୋହୂ ! ଏ ବୋହୂ !!···ବୁଢିଆ କୁଆଡ଼େ ଗଲା ?···ସେ ପୋଡ଼ାମୁହାଁ ଆଜି ଆସୁ, ତାକୁ ଦେଖୁଚି ରହ···ପରଘରେ ଗୃହକର୍ମ କରି ଏତେ ଗୋଟାଏ ବୁଲା କଅଣ ?···ଏ ବୋହୂ !! କ'ଣ କରୁଚୁ କିଲୋ··· ଘଡ଼ିଏ ବେଳହେଲା ଜଳଖିଆ ନେଇ ଯାଇଚୁ ସେ···ଏଣେ ଦୁଧ ଉତୁରି ଚୂଲିରେ ପଡିଲାଣି ··ତମ ମୁହଁକୁ ଯଦି ଏତେ ଟିକିଏ ନାଜ ଥାଆନ୍ତା ଲୋ—

ହାତେ ଜିଭ କାମୁଡ଼ି ସୁଲୋଚନା ତରବର କରି ବାହାରିଗଲେ । ସୁରେନ୍ଦ୍ର ଅନ୍ୟମନସ୍କ ଭାବରେ ବସି ଖାଉଥିବା ବେଳେ –

— ପରଦା —

## ତୃତୀୟ ଦୃଶ୍ୟ

(କିଛି ଦିନ ପରେ । ସମୟ ସକାଳ । ରବୀନ୍ଦ୍ରକୁମାର ଓ ସୁରେନ୍ଦ୍ର ଜଳଖିଆ ଖାଇ ବସିଛନ୍ତି । ସୁଲୋଚନା ପରିବେଷଣ କରୁଛନ୍ତି । ଟିକିଏ ଛଡ଼ାରେ ବସି ରବୀନ୍ଦ୍ରକୁମାରଙ୍କ ମା ଊର୍ମିଳା ଦେବୀ ବୋହୂକୁ ନାନା ଫରମାସ ବତାଉଛନ୍ତି । ବୟସ ଷାଠିଏ ସେ ପଟେ···ଦେହ ରଙ୍ଗ ପାଣ୍ଡୁର କଳା···ମୁଣ୍ଡବାଳ ପାଚି ଆସିଲାଣି ···ଅତିରିକ୍ତ ମୋଟା···ଦେହରେ ଛେଦାଧଡ଼ିଆ ଲୁଗା···ବେକରେ ତୁଳସୀ ମାଳ ।)

ଊର୍ମିଳା ଦେବୀ—ହଇରେ ସୁଚିଆ, ପଡ଼ା ତ ସରିଲା ବୋଲି··· ଏଥର ବାହାସାହା ହେଇପଡ଼—ଆଉ କେତେଦିନ ଏମିତି ବାଣ୍ଡୁଆ ବସିଥିବୁ ? ପିତେଇ ନାମା ଥରକୁ ଥର ଖବର ଦଉଚି ତାଙ୍କ ଗାଁ ବଳଦାସ ଝିଅ ପେଇଁ—ସେମାନେ ଆଉ ଅପେକ୍ଷା କରି ପାରିବେ ନାହିଁ ବୋଲି କୁଆଡ଼େ ଜଣେଇ ଦେଇଚନ୍ତି—ଭଲ ଝିଅଟିଏ ରେ—ପଢାଶୁଣା ବି କରିଛି— ମୁଁ ଜବାବ ଦେଇ ଦଉଚି---

ସୁରେନ୍ଦ୍ର—ତୋ ଆଖିରେ ତ ସମସ୍ତେ ସୁନ୍ଦର, ସମସ୍ତେ ପାଠୋଈ—

ସୁଲୋଚନା—(ଅନେକ କଷ୍ଟରେ ଏତେବେଳ ଯାଏ ପାଟି ବନ୍ଦ କରିଥିଲେ । ସୁରେନ୍ଦ୍ରର କଥା ଶୁଣି ପାଟି ଖଲ ଖଲ ହେଇ ଆପେ ମେଲା ହେଇଗଲା) ତମେ ଏବେ କହ ଦଉନ ସୁରି, ତମ ଆଖିରେ କଣେ ସୁନ୍ଦର—ଜଣେ ପାଠୋଈ—

(ସୁରେନ୍ଦ୍ର କଟମଟ କରି ଗୃହିଁଲା ସୁଲୋଚନାଙ୍କର ମୁହଁକୁ, କିନ୍ତୁ କିଛି କହିଲା ନାହିଁ)

ଊର୍ମିଳା ଦେବୀ—(ଏଥିପାଇଁ ଯେପରି ଆଗରୁ ପ୍ରସ୍ତୁତ ଥିଲେ) କ'ଣ
ସେ ସୋଇଁ ଝିଅ କଥା କଉଛୁ ? (ସୁରେନ୍ଦ୍ରକୁ ଚାହିଁ)
ହଇରେ, ଆମେ ପରା ମହାପାତ୍ର ?

(ସୁରେନ୍ଦ୍ର କଣେଇ ଚାହିଁଲା ରବୀନ୍ଦ୍ରକୁମାରଙ୍କୁ—ନର୍ବ'କାର ଭାବରେ ଖାଇ ଚାଲିଛନ୍ତି । ମନରେ ଅସୀମ ସାହସ ଠୁଳ କରି, ଖଣ୍ଡି କାଶ ମାରି ସୁରେନ୍ଦ୍ର କହିଲା)

ସୁରେନ୍ଦ୍ର—ଆଜିକାଲି ଆଉ ଜାତି ମାନୁଛି କିଏ ? ଯିଏ କାନ୍ଧରେ
ପଇତା ପକେଇଲା ସେ ହେଲା ବ୍ରାହ୍ମଣ···ଆମ ଜାତିର କି
ଆଉରି ନିଷ୍ଠା ଆମଠି ଅଛି ତୁ କହିଲୁ ?

ଊର୍ମିଳା ଦେବୀ—ହଇରେ, କଣ କହିଲୁ, କଣ କହିଲୁ ? ଆମ
ଜାତିର କୋଉ ଆଚାର ନିଷ୍ଠା ଆମଠି ନାହିଁ !! ସେଇଥିପେଇଁ
ହାଡ଼ ପାଣ କଣ୍ଡରା, ଯାହାଘରୁ ଇଚ୍ଛା ତୁ ଝିଅ ଆଣିବୁ ? ତୁ
ମରନ୍ତୁ ହେଲେ, ଜାଣନ୍ତି ମୋର ଗୋଟିଏ ପୁଅ ମରିଚି···
ଆରେ ! ଏଇଥିପାଇଁ କହୁଥିଲେ ଆମେ ଚାକିରୀ କଲେ
ବାହାହବୁ ।

ସୁରେନ୍ଦ୍ର—ଏଇ ତ ଏବେ···ମୋର ସାଙ୍ଗର ଗୋଟିଏ ବ୍ରାହ୍ମଣ
ପିଲା ଗୋଟିଏ ହରିଜନ ଝିଅକୁ ବାହାହେଲା—

ଊର୍ମିଳା ଦେବୀ—ଯାହାର ଯା ଖୁସି କରନ୍ତୁ କିନ୍ତୁ ମୁଁ ବଂଚ ଥାଉଁ
ଥାଉଁ ସେତକ କରେଇ ଦେବ ନାହିଁ---ତତେ ଆଗରୁ କହି
ରଖୁଛି---ମୁଁ ଯେତିକି ନରମ, ସେତିକି ଟାଣ—ମତେ
ଚିହ୍ନିଚୁ ତି ?

ରବୀନ୍ଦ୍ରକୁମାର – ବୋଉ ତୁ ଭୁଲ ପଡ଼େ – ସେ ଯଦି କାହାକୁ ବାହାହବାକୁ ଚାହୁଁଛି, ଆମର ସେଥିରେ ବାଧା ଦେବା ଉଚିତ ନୁହେଁ, କିନ୍ତୁ – ସୁର, ତୁ ଯାହା କରୁଚୁ ଭାବିଚିନ୍ତି କରୁଛୁ ତ ? (ସୁର କିଛି ଜବାବ ନ ଦେଇ, ନଜର ଅଇଁଠା ହାତକୁ ଚାହିଁ ରହିଲା) ମୁଁ ମାନୁଛି, ତାକୁ ବାହାହେଲେ ତୁ ସୁଖୀ ହେବୁ, କିନ୍ତୁ – ସବୁଦିନ ତ ଆଉ ସମାନ ଯିବନି···ତୋର ବି ପିଲାପିଲି ହେବେ ··ଆଉ···ଦିନେ ସେମାନେ ବି ବାହା ହେବେ···ସେତେବେଳେ ତୋ ଝିଅକୁ ତୁ କି ଘରେ ବାହା ଦବୁ ? ··· ତାର ଭବିଷ୍ୟତ ଥରେ ଭାବି ଦେଖ୍ ··ବ୍ରାହ୍ମଣ ଘରେ ବାହାହବାର ପ୍ରଶ୍ନ ଉଠୁନି ··କିନ୍ତୁ କୌଣସି ସମ୍ଭ୍ରାନ୍ତ ପରିବାରକୁ କଣ ତୋ ଝିଅ ବୋହୂ ହୋଇ ଯାଇ ପାରିବ ?

ସୁରେନ୍ଦ୍ର---ସମୟ ବଡ଼ ଜଲଦି ବଦଳି ଯାଉଚି ଭାଇ···ସେମାନେ ବାହାହେଲା ବେଳକୁ ସମାଜରୁ ଜାତିଭେଦ ପ୍ରଥା ଲୋପ ପାଇ ଯାଇଥିବ···

ରବୀନ୍ଦ୍ରକୁମାର---ଅସମ୍ଭବ । ହଜାର ହଜାର ବର୍ଷ ଧରି ଯେଉଁ ଜାତି ଭେଦ ପ୍ରଥା ଆମର ରକ୍ତ ମାଂସରେ ଚେର ମେଲି ଦେଇଛି, · ତାକୁ ଓପାଡ଼ି ଦେବାକୁ ଆଉରି ଯେ କେତେ ପୁରୁଷ ଲାଗିଯିବ ତା କହି ହବନି ସୁର ··

ସୁରେନ୍ଦ୍ର---କିନ୍ତୁ ମୁଁ ଯେ ତାକୁ କଥା ଦେଇ ସାରିଚି –

ଉର୍ମିଳାଦେବୀ---(ବସିବା ଜାଗାରୁ ଉଠିପଡ଼ି ରାଗରେ ଗର୍ଜନ ଛାଡ଼ିଲେ) କ’ଣ ଭାରି ବଡ଼ି ବଡ଼ି କଥା କଉଛୁ ! ପେଟକୁ ମୁଠାଏ ଦାନା ଯୋଗାଡ଼ କରିବାର ବଳ ନାହିଁ···କହିଲା

(ଖଟରୁ ହୋଇ) 'ମୁଁ କଥା ଦେଇ ସାରିଛି !!'···ହଇରେ ତୋ କଥା ଗୋଟାଏ କେଖା ?···ତୁ ଯା'--ତୁ ଅବ୍ବ ଯା ମୋ ଘରୁ···ଇଏ "ମୋ" ଘର···

(ଦାଣ୍ଡ ଆଡୁ ପାଟି ଶୁଭିଲା "ରବିବାବୁ, ଘରେ ଅଛ କି ?" ସାଙ୍ଗେ ସାଙ୍ଗେ ରବୀନ୍ଦ୍ର କୁମାର ଉଠି ପଡ଼ିଲେ—ପଛେ ପଛେ ସୁରେନ୍ଦ୍ର ମଧ୍ୟ। ସୁଲୋଚନା ଅଇଁଠା ଥାଳି ଉଠେଇବାରେ ବ୍ୟସ୍ତ ଆଉ ଉର୍ମିଳା ଦେବୀ ସେଇ ଆଡ଼କୁ ଚାହିଁ ମନକୁ ମନ କହିବାକୁ ଲାଗିଲେ) "କେଡ଼େ ଭୁଲ କଲିଟି···ପିଲାଟିଦିନୁ ବାହା କରି ଦେଇ-ଥିଲେ କାମ ତୁଣ୍ଡି ଯାଇଥାନ୍ତା···ଏତେବେଳକୁ ଆଉ ଭାବି ହବାକୁ କିଛି ନ ଥାନ୍ତା···ଝିଅଗୁଡ଼ିକ ସେତେବେଳେ ମତେ କେତେକରି କହୁଥିଲେଟି 'ବୋଉ ଲୋ ସୁରିଆକୁ ବାହା କରି ଦେ'···ମୁଁ ନିଆଁ ନାଗୀ ସେମାନଙ୍କ କଥା ଶୁଣିଲି ନାହିଁ···ଏଇକ୍ଷଣି ସେମାନେ ଲୋକମାନଙ୍କ ଆଗରେ କେମିତି ମୁହଁ ଦେଖେଇବେ···

—ପରଦା—

## ଚତୁର୍ଥ ଦୃଶ୍ୟ

ସମୟ—ପରଦିନ ସକାଳ।

(ସ୍ଥାନ—ରବୀନ୍ଦ୍ର କୁମାରଙ୍କ ପଢ଼ାଘର। ଖଣ୍ଡେ କାନ୍‌ଭାସ୍ ଖଟ କଡ଼କିଆ ହୋଇ ପଡ଼ିଛି। ତା' ଉପରେ ଗୋଟିଏ ବିଛଣା ଗୁଡ଼ାଇ ଓ ଡକିଆ। ପାଖକୁ ଲାଗି ପଢ଼ା ଟେବୁଲ। ଟେବୁଲ ଉପରେ ଖାତା ପତ୍ର ଓ ଗୋଟିଏ ନିର୍ବାପିତ ଟେବୁଲ ଲାମ୍ପ। ଖଟ ଉପରେ ରବୀନ୍ଦ୍ର କୁମାର ନିଘୋଡ଼ ନିଦରେ ଶୋଇଛନ୍ତି। ଭିତର ପଟୁ ହଠାତ ଗୋଳମାଳ ଶୁଭିଲା। କିଛି ସମୟ ପରେ

ଗୋଳମାଳଟା ଧୀରେ ଧୀରେ ପାଖେଇ ଆସିଲା । ତା’ପରେ ଦେଖାଗଲା ବଡ଼ ପାଟିରେ ବାହୁନି ବାହୁନିକା ଊର୍ମିଳା ଦେବୀ ରବୀନ୍ଦ୍ର କୁମାରଙ୍କ ବିଛଣା ପାଖରେ ଠିଆ ହେଲେ ।)

ଊର୍ମିଳା ଦେବୀ---ରବି ରେ···ସରିଗଲା···ମୋ କଥା ସରିଗଲା··· ମତେ ଭସେଇ ଦେଇଗଲା··ମୋ ତଣ୍ଟିରେ ଛୁରୀ ଦେଇ ଚାଲିଗଲା···ମୁଁ କଅଣ କରିବି ଲୋ · ମତେ ତ’ କିଛି ବାଟ ଦିଶୁନାହିଁ ··ମୁଁ ମରିଯାଆନ୍ତି ହେଲେ···

(ଆଖି ମଳି ମଳିକା ରବୀନ୍ଦ୍ର କୁମାର ବିଛଣା ଉପରେ ଉଠି ବସିଲେ । ଚାରିଆଡ଼େ ଆବାକାବା ହୋଇ ଚାହୁଁଥାନ୍ତି । କିଛି ବୁଝି ନ ପାରି ଊର୍ମିଳା ଦେବୀଙ୍କ ଆଡ଼କୁ ଟିକିଏ ବେଳ ଚାହିଁ ବିରକ୍ତ ହୋଇ କହିଲେ)

---କଣ ହେଲା ?

ଊର୍ମିଳା ଦେବୀ---ରବି, ସୁରିଆ ମୋର ଆଉ ନାହିଁରେ –

ରବୀନ୍ଦ୍ର କୁମାର---(ଚମକିପଡ଼ି) କଣ ବିଷ ଖାଇଛି ?

ଊର୍ମିଳା ଦେବୀ---(ହାତରେ ଧରିଥିବା କାଗଜ ଖଣ୍ଡିକ ବଢ଼େଇ ଦେଇ, ହୁଁ ହୁଁ ହୋଇ କାନ୍ଦି ଉଠିଲେ) ମୁଁ କ’ଣ ଏତେ କଥା ଜାଣିଥିଲି କରେ ?···ମୁଁ ହତଭାଗୀ, ରାତିରେ ତାକୁ କାହିଁକି ଇମିତି କହିଲିଟି !···

ରବୀନ୍ଦ୍ର କୁମାର---(ଚିଠି ପଢ଼ି, କିଛି ନ ହେଲା ପରି ଭାବ ଦେଖେଇ) ଏଥିରେ କାନ୍ଦିବାର କ’ଣ ଅଛି ବୋଉ ? ପିଲା ବୟସ । ଯେଉଁଆଡ଼େ ବୁଲି ଆସିବାକୁ ମନ ହେଲା ବୋଲି ଚାଲିଯାଇଛି··· ପୁଣି ବଳେ ଫେରି ଆସିବନି ଯେ ତୁ ଏମିତି ବ୍ୟସ୍ତ ହଉଛୁ

କିଆଁ ?···ଆଜିକାଲିର ଟୋକାମାନଙ୍କର ଇଏ ଗୋଟାଏ ନୂଆ ଷ୍ଟାଇଲ୍ — ଟିକିଏ କିଛି ହେଲା ତ "ଆମେ ଆଉ ଏ ଘରେ ରହିବୁ ନାହିଁ" (ଅନ୍ୟମନସ୍କ ହୋଇ ପଡ଼ିଲେ)

ଊର୍ମିଳା ଦେବୀ---(ନାକ ପୋଛି) ଆରେ ମୋର ଲକ୍ଷେ ଟଙ୍କାର ମୁଣ୍ଡ ତ' ଗଲା···ଟୋକାଟା ବଇରାଗୀ ହୋଇଗଲା···ଏଇଥି ପେଇଁ କଣ ଏତେ କଷ୍ଟ ସହି ତାକୁ ମୁଁ ବଢ଼େଇଥିଲି ? ତୁ ଟିକେ ବେଗେ ପୁଲିସିରେ ଖବର ଦେ ଭଲା···ଆଉ କଣ ସତେ ମୁଁ ତାକୁ ପାଇବି ?···

ରବୀନ୍ଦ୍ର କୁମାର---ତୁ ଖାଲି ଟିକିଏ ଅପେକ୍ଷା କରି ଦେଖ୍ ବୋଉ, ସେଇ ନିଜେ ଦିନେ ଆସି ଯଦି ତୋ ଗୋଡ଼ ଧରି ଦୋଷ ନ ମାଗିଚି ତ' ମତେ କହିବୁ ।

ଊର୍ମିଳା ଦେବୀ--(ସୁଁ ସୁଁ ହୋଇ) ସେ ଦୋଷ ମାଗିବାରେ ମତେ କଅଣ ମିଳିବ ରେ, ମତେ ମୋ ପୁଅକୁ ଫେରେଇ ଦେ ··ତୁ ତ' କଣ ଜମା ଉଠୁନୁ···ଏତିକି ବେଳୁ ଯିବା ଫାଣ୍ଡିରେ ଖବର ଦେଲେ ସେ ମିଳନ୍ତା···

(ରବୀନ୍ଦ୍ର କୁମାର ମୁହଁ ଧୋଇବାକୁ ଉଠିଗଲେ । ସାମନା ପଡ଼ଶା ଘରୁ ବୁଢ଼ୀଟିଏ ଆସି ଦାଣ୍ଡ କବାଟରେ ହାତ ମାରିଲା । ଊର୍ମିଳା ଦେବୀ ଉଠିଗଲେ କବାଟ ଖୋଲିବାକୁ)

—ସୁରବୋଉ, କବାଟ ଖୋଲିବୁଟି ।

ଊର୍ମିଳା ଦେବୀ---(କବାଟ ଖୋଲି) ମୋ କଥା ସରିଗଲା ଲୋ ନାନୀ ···ସୁରିଆ ବଇରାଗୀ ହୋଇଗଲା··(କାନ୍ଦଣା ସ୍ୱରରେ)

ପତ୍ର ଚିଠି ରଖି ଯାଇଛ, 'ମତେ ଆଉ ବୃଥାରେ ଖୋଜିବ ନାହିଁ'···ମୁଁ କଅଣ କରିବିଲେ ନାନୀ—ମତେ ଟିକେ ବୁଦ୍ଧି ବତା ଦେଲେ···ରହରୀ ତ' ମୋ କଥା ଶୁଣୁନ···ତୁ ଟିକେ ହେଲେ ତୋ ପୁଅକୁ କହନ୍ତୁ କି ସେ ଦୁଲଆ ଦେଇ ଖୋଜନ୍ତା···ନେଇଯା' ଏ ଚିଠି, ତାକୁ ଦେଖେଇବୁ···ଆଉ ମୋର ହୋଇ ଦି'ପଦ କହିବୁ···

ହୀରା ନାନୀ---ହଉ ଦେ (ଚିଠି ନେଇ)···ତୁ ଉଠ୍, ଗାଧୁଆ ପାଧୁଆ ସାରି, ମନ୍ଦାଏ --

ଊର୍ମିଳା ଦେବୀ---କି କଥା କଉଛୁ ନାନୀ···ମୋ ପୁଅ ସେଣେ ଅଧୁଆ ଅଖିଆ କା' ଝୋଲିତଳେ ପଡ଼ିଥିବ···ଏଠି ବସି ମୁଁ ସତ୍ୟାନାଶୀ ପେଟ ଅଣ୍ଡା କରିବ।···ଆଲେ, ସେ ନ ଫେରିବା ଯାଏଁ ମୋ ପେଟକୁ କେମିତି ଗୁଣ୍ଡା ଯିବ କହ ? ତୁ କଣ ପୁଅ ଜନ୍ମ କରିନୁ ? (ସୁଁ କରି କାନିରେ ନାକ ପୋଛିଲେ ।)

(ସୁଲୋଚନାଙ୍କର ପ୍ରବେଶ । ହୀରା ପିଉସୀଙ୍କୁ ଦେଖି ମୁଣ୍ଡରେ ସାମାନ୍ୟ ଓଢ଼ଣା ଟାଣି ଦେଇ କହିଲେ)

ସୁଲୋଚନା – ଆସିବା ବୋଉ, ଶାଗ ଖରଡ଼ା ସରିଲାଣି···ଲୁଗା ପାଲଟି ମନ୍ଦାଏ ତୋରାଣି ପିଇ ବ···କାଲି ଏକାଦଶୀ ଥିଲା, ପେଟରେ ପିତ୍ତ ପଡ଼ିଯିବଣି···ଆସ (ହାତ ଧରିବାକୁ ଯିବାବେଳେ)

ଊର୍ମିଳା ଦେବୀ – (ହାତ ଛିଂଗୁଡ଼ି ଦେଇ) ହାତ୍ ତୋ ମୁହଁରେନଅାଁ -

ହୀରା ନାନୀ – ହଇଲେ, ତୁ କୋଉ ମୁହଁରେ ଏ କଥା ଧରୁଚୁ ବା ? ତା ପୁଅ ଯାଇଁ କୋଉଠି କ'ଣ କରୁଥିବ, ଆଉ ତୁ ଅବ

ତାଙ୍କୁ ଡାକୁଚ୍ ଖାଇବାକୁ ! ତା ପେଟକୁ କେମିତି ଟୋକ ଯିବ ଆଗ ମତେ କହିଲୁ ? ଯେତେହେଲେ ତ' ପୁଅ···ତା ପାଇଁ ମା'ମନ ନ ତଟି ଆଉ କଣ ତୋ ମନ ତଟିବ ?···ମୁଁ ଯାଏଁ ଲୋ···ସେତେଣ ମତେ ପୁଣି ଖୋଜା ଖୋଜ କରିବାକୁ ପଡ଼ିବ (ହୀରାନାନୀ ଉଠିଗଲେ) !

(କିଛି ସମୟ ପରେ ସଫା ଧୋତି କାମିଜ ପିନ୍ଧି ରବୀନ୍ଦ୍ର-କୁମାର ଘର ଭିତରେ ପଶିଲେ । କଣ ଖୋଜିଲାପରି ହୋଇ)

ରବୀନ୍ଦ୍ରକୁମାର—ବୋଉ, ଚିଠିଟା କୋଉଠି ରଖିଲୁ ? ଜଲଦି ଦେ (ହାତ ଘଡ଼ିକୁ ଚାହିଁ ବ୍ୟସ୍ତହୋଇ) ସେ ଇନ୍‌ସ୍‌ପେକ୍ଟର ଏତେକ୍ଷଣି ଥିବେ କି ନାହିଁ କେଜାଣି···(ଚିଠି ଉଦ୍ଦେଶ୍ୟରେ ହାତ ବଢ଼େଇଲେ)

(ଉର୍ମିଳା ଦେବୀ ନସର ପସର ହୋଇ ଦାଣ୍ଡକୁ ବାହାରିଗଲେ ।)

ରବୀନ୍ଦ୍ର—ଏ ବୋଉ ! ତତେ ଶୁଭୁନି ? ଚିଠିଟା ଦେଇଯା ।

ଉର୍ମିଳା—(ଯାଉ ଯାଉ ) ଆସୁଚି ରହ ବା—

ରବୀନ୍ଦ୍ରକୁମାର—(ଦାନ୍ତ କାମୁଡ଼ି, ବୋଉ ଯିବା ବାଟକୁ ଚାହିଁ) ସତରେ ଯାହାକୁ କହନ୍ତି—ଏ ମାଇକିନିଆଙ୍କ କଥାରେ ପଡ଼ିଲେ ମଣିଷ ଏମିତି ହଇରାଣ ହୁଏ··· (ଅଳ୍ପ ସମୟ ଭିତରେ ଉର୍ମିଳା ଦେବୀ ଫେରି ଆସିଲେ ।)

ଉର୍ମିଳା ଦେବୀ—(ଚିଠି ବଢ଼େଇ ଦେଇ) ହେଇଟି ନେ··· ହୀରାନାନୀ ବହିଆକୁ ପଢ଼ିବାକୁ ଦେଇଥିଲି···ବହିଆ କଥା ଦେଇଚି ଖୋଜେଇ ଦବ···କହିଲି 'ଇଏ କି ଗୁର—

ଯା’ଠୁ କେତେ ବଡ଼ ବଡ଼ କେସରେ ସେମାନେ ଜଡ଼ାଇ ନେଇଛନ୍ତି···ଭଲ ପିଲାଟିଏ ବାଗିଆ···

ରବୀନ୍ଦ୍ର କୁମାର—(ଖିଙ୍କାରିଉଠି) ତେବେ ନେଇଯା ତାକୁ ଦବୁ -- କୁଆଡ଼ର ଲଫଙ୍ଗାଟାଏ···କହୁଛି—

ଉର୍ମିଳା ଦେବୀ—ଆରେ ତୁ ଜାଣିନୁ କି ? ସେ ପରା ଏବେ କନେଷ୍ଟବଲ . ଚାକିରୀ ପାଇଲାଣି···ହୀରାନାମି ପରା ଆଜି କହୁଥିଲା ପୁଲିସି ସାଇବ ହବାକୁ ତାର ଆଉ ଅଳପ ଦିନ ବାକି ଅଛି···

ରବୀନ୍ଦ୍ର କୁମାର—(ବିରକ୍ତ ହୋଇ ଚିଠିଟା ପକେଟରେ ରଖି) ବୋଉ, ତୁ ଆଗ ଘର ଭିତରକୁ ଯା, ତା’ପରେ ଯାହା କରିବା କଥା ମୁଁ କରିବି ।

ଉର୍ମିଳା ଦେବୀ—(ତେଜି ଉଠି) ତୁ ମତେ କଅଣ କେଉଁ ପାଇଲୁ କିରେ ? ସୁରିଆ ନ ଫେରିବା ଯାଏଁ ମୁଁ ଏଇଠି, ଏଇ ଦାଣ୍ଡ ଦୁଆରେ ବସିଥିବି ।

(ରବୀନ୍ଦ୍ର କୁମାରଙ୍କର ପ୍ରସ୍ଥାନ ଏବଂ ତାଙ୍କ ପଛେ ପଛେ ଉର୍ମିଳା ଦେବୀ ଉଠିଯାଇ ତାଙ୍କ ଯିବା ବାଟକୁ ଚାହିଁ ରହିଲେ)

— ପରଦା —

## ପଞ୍ଚମ ଦୃଶ୍ୟ

ଦେଢ଼ ବର୍ଷ ପରେ –

ସ୍ଥାନ – ପୂର୍ବର ସେଇ ଘରଟି—ଏଥର ଟିକଏ ବେଶି ମାତ୍ରାରେ ହତଶ୍ରୀ ଦେଖା ଯାଉଛି ।

ସମୟ – ଦ୍ୱିପ୍ରହର ।

(ଉର୍ମିଳା ଦେବୀଙ୍କର ମୃତ୍ୟୁ ଖବର ପାଇ ବଡ଼ପୁଅ ମହେନ୍ଦ୍ର କୁମାର ଶ୍ରାଦ୍ଧଘର କରିବାକୁ ଠାଠାରୁ ଆସିଥିଲେ – ସାଥିରେ ଏକମାତ୍ର ପୁଅ ଦେବେନ୍ଦ୍ର । ଝିଅ ମନୋରମା ଠାଠାରେ ଶାଶୁଘରେ ଅଛି – ଆସି ପାରିଲାନାହିଁ । ଉର୍ମିଳା ଦେବୀଙ୍କର ଚାରିଝିଅ ଭିତରୁ ଦୁଇଜଣ ପିଲାପିଲି ଧରି ଆସିଥିଲେ – ସକାଳ ଗାଡ଼ିରେ ଫେରିଗଲେ ।

ରବୀନ୍ଦ୍ର କୁମାରଙ୍କ ପଢ଼ାଘରେ ତିନୋଟି ମଣିଷ ବସିଛନ୍ତି – ରବୀନ୍ଦ୍ରକୁମାର, ସୁଲୋଚନା ଓ ତାଙ୍କ ସ୍ୱାମୀ ମହେନ୍ଦ୍ର କୁମାର । ମହେନ୍ଦ୍ରକୁମାରଙ୍କ ବୟସ ପଇଁତ୍ରିଶ ପାଖାପାଖି···ସାଧାରଣ ସ୍ୱାସ୍ଥ୍ୟ···ମୁଣ୍ଡବାଳ ଅଳ୍ପ ପାଚି ଆସିଛି···ଆଖିରେ ମୋଟା ଚଷମା··· ଠାଣୀ କମ୍ପାନୀରେ କିରାଣି । ସାମନା ସାମନି ଗୋଟାଏ ଟୁଲ ଉପରେ ବସି ରବୀନ୍ଦ୍ର କୁମାରଙ୍କ ମୁହଁକୁ ଚାହିଁଛନ୍ତି – ଜଣାଯାଉଛି ଯେମିତି କୌଣସି ଗୋଟାଏ କଥା ନେଇ ତାଙ୍କ ମନରେ ଦ୍ୱନ୍ଦ୍ୱ ଜାଗିଛି । ଚୌକିରେ ଆଉଜି ବସି ରବୀନ୍ଦ୍ର କୁମାର ଆଖିବୁଜିଛନ୍ତି ଓ ମଝିରେ ମଝିରେ ଛାତି ଚିପିଧରି ଖୁଁ ଖୁଁ ହେଇ କାଶୁଛନ୍ତି---ଛାତିର ପଞ୍ଜରାହାଡ଼ ଗଣି ହୋଇ ଯାଉଛି---ଗୋଡ଼ତଳେ ପିକଦାନୀ । ଟିକଏ ଦୂରରେ ଭିତର ପଟ କବାଟକୁ ଆଉଜି ସୁଲୋଚନା

ସ୍ୱାମୀଙ୍କ ମୁହଁର ଭାବ ପରିବର୍ତ୍ତନ ଲକ୍ଷ୍ୟ କରୁଛନ୍ତି । ସମସ୍ତଙ୍କ ମୁହଁରେ ବିଷାଦର ଛାୟା ।

କରିକଆ ହୋଇ ପୁରୁଣା କାନ୍‌ଭାସ୍ ଖଟଟି ପଡ଼ିଚ— ସେଥିରେ ପରିତ୍ୟକ୍ତ ବିଛଣା ।)

ମହେନ୍ଦ୍ର କୁମାର—(ଟିକଏ ଇତସ୍ତତ ହୋଇ) ରବି—

(ରବୀନ୍ଦ୍ର କୁମାର କୌଣସି ଉତ୍ତର ନ ଦେଇ କେବଳ ଥରେ ଆଖିମେଲି ଚାହିଁ ପୁଣି ଆଖି ବୁଜିଲେ) ।

ମହେନ୍ଦ୍ର କୁମାର—ବୋଉ ତ ଚାଲିଗଲା···ଅବଶ୍ୟ ସେ ଯୋଉ କାରଣରୁ ଯାଉ, ତାର ଯିବାର ବେଳ ହୋଇଥିଲା··· ହତଭାଗା ସୁରିଆଟା ଯଦି ଆଜି ଥା'ନ୍ତା, ମୁଁ ଏତେ ଭାବି ହୁଅନ୍ତି କାହିଁକି ?···ଧନେ ଅଧେ ନୁହେଁ—ଦେଢ଼ବର୍ଷ କାଳ ବୋଉ ତା ବାଟକୁ ଚାହିଁ ଚାହିଁ ଶେଷରେ ଗଲା···ଆଉ··· ଆଉ···ଏମିତି ଅବହେଳାରେ ଧନେ ତୁ ବି ଚାଲିଯିବୁ··· ଜଣ ଜଣ କରି ଏ ଘରର ସମସ୍ତେ···ମୋରି ଆଖି ଆଗରେ, ମତେ ଫାଙ୍କି ଦେଇ ଏମିତି ଚାଲିଯିବ · ଆଉ ମୁଁ···ଦେଢ଼ଶ' ଟଙ୍କାର କିରାଣୀ ମୁଣ୍ଡ ମୋର···ଶକ୍ତି ନାହିଁ, ସାମର୍ଥ୍ୟ ବି ନାହିଁ ପ୍ରତିରୋଧ କରିବାକୁ···ଭଗବାନ ! ଗରିବକୁ ଏମିତି ଚିରିଆଉ ନମ୍ର କରି କାହିଁକି ଦୁନିଆକୁ ପଠାଅ ?

(ଦୁଇ ହାତରେ ଛାତି ଚିପିଧରି କ୍ଷୀଣ ସ୍ୱରରେ ରବୀନ୍ଦ୍ରକୁମାର କାଶି ଉଠିଲେ—ମୁହଁରେ ଯନ୍ତ୍ରଣାର ଚିହ୍ନ । ସୁଲୋଚନା ଆଗେଇ ଆସିଲେ ସାହାଯ୍ୟ କରିବାକୁ । ତାଙ୍କୁ ହାତ ଠାରି ବାଧା ଦେଇ ରବୀନ୍ଦ୍ରକୁମାର ପିକଦାନ ଉଠେଇ କଫ ପକେଇଲେ । ତା' ପରେ

ପିକଦାନ ରଖିଦେଇ କିଛିବେଳ ବିକୃତ ମୁହଁରେ ଗୁଣ୍ଡି ଚିପିଧରି, ଆଖିବୁଜି, ସେମିତି ବସି ରହିଲେ ।

ମହେନ୍ଦ୍ରକୁମାର—ମୋ କଥା ଶୁଣ୍ ରବି,···ଏ ଘର ବିକିଦେଇ, ସେଇ ଟଙ୍କାରେ କୌଣସି ସ୍ୱାସ୍ଥ୍ୟାନିବାସରେ କିଛିଦିନ ଯାଇ ରହ···ନିଶ୍ଚେ ଭଲ ହୋଇଯିବୁ ତୁ···ମଣିଷ ନ ଥିଲେ ଘର ବା କଅଣ ହବ ?

ରବୀନ୍ଦ୍ରକୁମାର—(ମ୍ଳାନ ହସ ହସି) ପାଗଳ ହେଲ ଭାଇ ? ଦି'ଦିନ ଆଗର କଥା ଏତେ ବେଗି ଭୁଲିଗଲ ? କଟକ ହସ୍‌ପିଟାଲ୍‌ରେ ଯେତେବେଳେ ମତେ ଜାଗା ମିଳିଲା ନାହିଁ—

ମହେନ୍ଦ୍ରକୁମାର—ତାଙ୍କର ଜାଗା ନ ଥିଲା ରେ—

ରବୀନ୍ଦ୍ରକୁମାର—ଥିଲା···କିନ୍ତୁ ମୋ ଅବସ୍ଥା ଏତେ ଆଗେଇ ଯାଇଚି ଯେ—(ଗଳା ଝାଡ଼ିଲେ)

ମହେନ୍ଦ୍ରକୁମାର—ତୁ ସେ ହୋମିଓପ୍ୟାଥିକ୍ ଚିକିତ୍ସା ଛାଡ଼ିଦେ··· ଆଉ···ବଡ଼ଟା ବି ଏକଦମ୍ ଛାଡ଼ିଦେ···

ରବୀନ୍ଦ୍ରକୁମାର—ମୁଁ ସବୁ ଛାଡ଼ିଦେବି ଭାଇ···କ'ଣ ବା ମିଳିବ ସେଥିରୁ ?···

ମହେନ୍ଦ୍ରକୁମାର—ଆଗରୁ ଚିକିତ୍ସା କରିବା ତୋର ଉଚିତ ଥିଲା, ରବି ।

ରବୀନ୍ଦ୍ରକୁମାର—ଉଚିତ ତ ଥିଲା···କିନ୍ତୁ କାହିଁକି କରିଥାନ୍ତି ?··· ବଂଚିରହି କି ଲାଭ ?···ଏ ଅନୁର୍ବର ଭୂଇଁରେ କିଛି ଉଧାଏନି ···ସବୁ ରସ ଶୋଷି ନେଇଯାଏ ହତାଶା, ହାହାକାର···

ମହେନ୍ଦ୍ରକୁମାର—ତା ବୋଲି ଜୀବନକୁ ଏମିତି ଅକାଳରେ— (ଟିକିଏ ରହି) ତୋର ଭବିଷ୍ୟତ ଥିଲା, ରବି !

ରବୀନ୍ଦ୍ରକୁମାର—ଛେଳନା ଭବିଷ୍ୟତ···ସାରା ଜୀବନ ଖଟି ଖଟି ଟଙ୍କା ତ ମିଳିଲିନି···ଖାଲି ପ୍ରଶଂସା···ହୁଁ···ପ୍ରଶଂସାରେ ଆଉ ଯାହା ଥାଉ—କାହାରି ପେଟ କେବେ ପୂରିନି···

ସୁଲୋଚନା—ବୋଉ, ମୁଁ କେତେଥର—

ରବୀନ୍ଦ୍ରକୁମାର—(ନ ଶୁଣିଲାପରି, ମହେନ୍ଦ୍ରକୁମାରଙ୍କୁ ଗୃହିଁ) ଭାଇ ତମେ ସବୁ ଆଜ ରାତିରେ ଯାଉଚଟି ? ଅନେକ ଦିନ ଛୁଟି ନେଇଗଲି···

ମହେନ୍ଦ୍ରକୁମାର—ହଁ, ମୁଁ ଆଜ ରାତିରେ ଯିବି···କଟକରେ ଟିକିଏ କାମ ବି ଅଛି···

(ସୁଲୋଚନାଙ୍କୁ ଗୃହିଁ) ତୋର କିଛି ଅସୁବିଧା ହେବନି··· (ସୁଲୋଚନାଙ୍କର ମୁହଁ ଗମ୍ଭୀର ହୋଇଗଲା) ।

ରବୀନ୍ଦ୍ରକୁମାର—ଭାଉଜ-ବୋଉଙ୍କୁ ବି ସାଥିରେ ନେଇଯାଅ··· ବୋଉ ତ ଗୃଲିଗଲା · ଏଠି ରହି ସେ ଆଉ କ'ଣ କରିବେ ?··· ଅନେକ ଦିନ ହେଲା ମନୁକୁ ଦେଖି ନାହାନ୍ତି ବୋଲି କହୁଥିଲେ···

ମହେନ୍ଦ୍ରକୁମାର—ସମସ୍ତେ ମୋ ସାଥିରେ ଯିବେ ଘରେ ଆଉ କିଏ ରହିବ ? ଏ ହୁଣ୍ଡା ବନ୍ଧଆ ହାତରେ ତତେ ମୁଁ ଛାଡ଼ି ଦେଇ ଯିବି ? ଘର ମଣିଷରୁ କେହି ଜଣେ ତ ପୁଣି ରହିବା ଦରକାର···

ରବୀନ୍ଦ୍ରକୁମାର—କାହାରି ରହିବା ଲୋଡ଼ା ନାହିଁ ମୋର···

ମହେନ୍ଦ୍ରକୁମାର—ଖାଲି କହିଦେଲେ ହେଇଗଲା ? ···ସେଇଥିପାଇଁ ମୁଁ କହୁଥିଲି କୌଣସି ସାନାଟୋରିୟମକୁ ତୁ ଗୃଲିଯା— ହସପିଟାଲ୍‌ରେ ଜାଗା ନ ଦେଲେ ତ ନାହିଁ···ଭଗବାନ ବି

ଗୋଟିଏ ସୁଯୋଗ ଆସି ପହଁଚେଇଛନ୍ତି···ଆଜ ସକାଳେ ପଡ଼ିଶା ଘର ହରିବାବୁ କହୁଥିଲେ ଘରଟା ବିକିଦେଲେ ସେ କିଣି ନଅନ୍ତେ···ମୁଁ ଭାବୁଛି ତତେ ଥରେ ପଚାରିବା ଉଚିତ ···ନା କଣ କହୁଛୁ ? ··ଟଙ୍କା ଅଭାବରୁ ମୁଁ ଗତ ସାଲ ଦେବକୁ ଇଞ୍ଜିନିୟରିଂ ପଢ଼ିବାକୁ ପଠେଇ ପାରିଲିନି··· ଟୋକାଟାର ଗୋଟାଏ ବର୍ଷ ମାଟି ହୋଇଗଲା···ଲୋକେ ମତେ ଅଙ୍କା କରୁଛନ୍ତି···ମତେ ବି କୁଆଡ଼ୁ ବୁଦ୍ଧିବାଟ ଦିଶୁନି··· ମନୁର ବାହାଘର କରଜ ଆଜିଯାଏ ଶୁଝା ହୋଇ ପାରିନି । ଚାହୁଁ ଚାହୁଁ ଆସି ତିନିବର୍ଷ ହୋଇଗଲା···ଏ ସବୁଆଡ଼ୁ ଭାବି ବସିଲେ ଘର ବିକିବା ଛଡ଼ା ଆଉ ଅନ୍ୟ ବାଟ ନାହିଁ— ସେଥିରେ ତୋର ବି ଲାଭ, ମୋର ବି ଲାଭ···ବୋଉ ତ ଚାଲିଗଲା···ତେବେ ଘର ଆଉ କାହାପାଇଁ ରଖିବା ?

ରବୀନ୍ଦ୍ରକୁମାର—ସୁର ତ ପୁଣି ଅଛି···ତାକୁ ନ ପଚାରି··· .

ମହେନ୍ଦ୍ରକୁମାର—ଦୁର୍, ସେ କଅଣ ଆଉ ଫେରିବ ?

ରବୀନ୍ଦ୍ରକୁମାର—(ଟିକିଏ ଦୃଢ଼ ସ୍ୱରରେ) ଫେରିବ—ସମସ୍ତେ ଫେରନ୍ତି (ଉଦ୍‌ଗତ କାଶକୁ ରୋକିବାର ଚେଷ୍ଟାକଲେ) ।

ମହେନ୍ଦ୍ରକୁମାର—(ମନର ରାଗ କଥାରେ ପ୍ରକାଶ ନ କଲେ ବି ମୁହଁର ଭାବଭଙ୍ଗୀରୁ ସୁସ୍ପଷ୍ଟ ହୋଇ ଉଠିଲା) ତେବେ ତୁ ସୁରିଆକୁ ଚାହିଁ ବସିଥା—ମୁଁ 'ମୋ' ଭାଗ ବିକିଦେଇ ଚାଲିଯିବି ।

(ମହେନ୍ଦ୍ରକୁମାର ଉଠି ଚାଲିଗଲେ—ପଛେ ପଛେ ସୁଲୋଚନା । ରବୀନ୍ଦ୍ରକୁମାର ସେମାନଙ୍କ ଯିବା ବାଟକୁ ଚାହିଁ ନିସ୍ତେଜ ଭାବରେ ହସିଲେ । )

—ପରଦା —

## ଷଷ୍ଠ ଦୃଶ୍ୟ

ଦୁଇମାସ ପରେ—

(ସେଇ ପୂର୍ବ ପରିଚିତ ଘର, କିନ୍ତୁ ଗୋଟିଏ ଭିନ୍ନ କୋଠରୀ । କାନ୍ଥ ଠଣାରେ ଲଣ୍ଠନଟିଏ ରଖା ହୋଇଛି । ଆଗର ସେଇ କାନଭାସ ଖଟଟି କାନ୍ଥକୁ ଲଗି ପଡ଼ିଛି । ଖଟ ତଳେ ହଳେ ରବର ଜୋତା । ମୁଣ୍ଡ ପଟେ ତଳେ ଗୋଟିଏ ଛୋଟ ମାଟି ହାଣ୍ଡି ଓ ପିକଦାନ । ଖଟ ସାମନାରେ ସେଇ ପୁରୁଣା ଟେବୁଲଟି ଓ ଖଣ୍ଡେ ପୁରୁଣା ଚୌକି । ଟେବୁଲ ଉପରେ ଗୋଟିଏ କାଚ ଗ୍ଲାସରେ ଅଧ ଗ୍ଲାସେ ପାଣି । ଗ୍ଲାସ ପାଖରେ ଗୋଟିଏ ପ୍ଲେଟ ଓ ଦୁଇମୁଚ । ବୋଧହୁଏ କିଛିବେଳ ଆଗରୁ ସେଥିରେ ଖିଆ ହୋଇଥିଲା—ସେମିତି ଅଧୁଆ ପଡ଼ିଛି । ତା'ର ପାଖରେ ଖଣ୍ଡେ ହାତ ପଙ୍ଖା, ଦି'ଟ୍ରିଟା ବଡ଼ ଓ ଔଷଧିଲାଟିଏ ।

କଡ଼କଆ ହୋଇ ଗୋଟିଏ ଆଲନା—କିଛି ମଇଳା ଲୁଗା ଝୁଲୁଛି । ଆଲନା ପାଖରେ ଖଣ୍ଡେ କଳଙ୍କି-ଲଗା ଟିଣ ଟ୍ରଙ୍କ—ଟ୍ରଙ୍କରେ ତାଲା ନାହିଁ । ଟ୍ରଙ୍କକୁ ଲଗି, ରୋଗୀର ଆଖି ପଡ଼ିବା ଭଳି ଜାଗାରେ ଗୋଟିଏ ଛୋଟ କାଚ ଆଲମାରୀ—ବହୁତ ପୁରୁଣା—କାଚସବୁ ଭାଙ୍ଗିଗଲାଣି । ସେଥିରେ ସବା ଉପର ଥାକଟିରେ ସଜା ହୋଇଛି କେଇଖଣ୍ଡି ଉପନ୍ୟାସ ଓ ନାଟକ । ବାକି ଥାକ ଗୁଡ଼ାକରେ କେଇଖଣ୍ଡି ଇଂରାଜୀ ଓ ଓଡ଼ିଆ ବହି ଓ ମାସିକ ପତ୍ରିକା ।

କାନ୍ଥରେ ଗୋଟିଏ କ୍ୟାଲେଣ୍ଡର ଝୁଲୁଛି । ସେଇ କଣରେ ଗୋଟିଏ ଛୋଟ ଆରେସି ଓ ପାନିଆ ମଧ୍ୟ ଝୁଲୁଛି ।

ଘରଟିରେ ହଠାତ୍ ଆଖି ପଡ଼ିଗଲେ ମନେହୁଏ ଯେମିତି ନିଶ୍ୱାସ ରୁନ୍ଧ ହୋଇଯିବ !)

ସମୟ—ସକାଳ ନଅଟା କମ୍ବା ଦଶଟା ।

(ଖଟ ଉପରେ ତକିଆକୁ ଠେସ ଦେଇ କାନ୍ଥକୁ ଆଉଜି ବସିଛନ୍ତି ରବୀନ୍ଦ୍ରକୁମାର । ମୁହଁରେ ଦ'ଆଙ୍ଗୁଳ ଲେଖାଏଁ ନିଶ ଦାଢ଼ି । ଲେଗ୍ସ କୋଗ୍ସ ବିଛଣା । ଖଣ୍ଡେ ରଙ୍ଗଣି ଗୁଦରରେ ମୁହଁଟିକୁ ଗୁଡ଼ି ବାକି ଦେହଟା ଢଙ୍କା ହୋଇଛି । ଝିମେଇଲା ପରି କାନ୍ଥକୁ ଆଉଜି ବସିଛନ୍ତି । ମୁଣ୍ଡତଳ ତକିଆ ପାଖରେ ହାତଘଣ୍ଟା ଓ ଖଣ୍ଡେ ଉପନ୍ୟାସ ପିଠି ବାଗିଆ ପଡ଼ିଛି । )

ରବୀନ୍ଦ୍ରକୁମାର—ବନ୍ଧଆରେ···(ଟିକିଏ କାଶି)···ଏ ବନ୍ଧଆ ।

—ଯାଉଚି ବାବୁ ।

ରବୀନ୍ଦ୍ରକୁମାର—(ଉଦ୍‌ଗତ କାଶକୁ ରୋଧ କରିବାର ଚେଷ୍ଟାକରି) ପିକଦାନଟା ଟିକିଏ ଦେଇଯା' ବାପ···

—ପାଣି ଉତୁରିଲାଣି, ଏଇ ବାଇଗଣ ଦ'ଟା ପକେଇ ଦେଇ ଯାଉଚି ।

ରବୀନ୍ଦ୍ରକୁମାର—(ଆଉ ସମ୍ଭାଳି ପାରିଲେ ନାହିଁ । ଖୁଁ ଖୁଁ ହୋଇ କାଶି ଉଠିଲେ)···ବନ୍ଧଆ···

—ଟିକିଏ ରୁହ ବାବୁ···ଲୁଣ, ମସଲା ପକେଇଦେଇ ଯାଉଚି···ମଲା ମୋର,ଏ ହାଲଧା ଟିକିଏ ବ ନାଇଁ ? (ଶିଳ ପଡ଼ି, ହଲଧା ଛେଚ୍ସ ହେବାର ଶବ୍ଦ ଶୁଭିଲା)

ରବୀନ୍ଦ୍ରକୁମାର—ଉଁଃ···ଉଁଃ ··ଓଃ···ଭଗବାନ···କ କଷ୍ଟ !···(କାଶର କଷ୍ଟ ରୋଧିବାକୁ ଗୋଟିଏ ହାତରେ ଗୁଣ୍ଡି ଚପିଧରି ଅନ୍ୟ ହାତରେ ଭରଦେଇ, ଟିକିଏ ସାମନାକୁ ଘୁଞ୍ଚି ପିକଦାନ ଦରାଣ୍ଡିଲେ । ହଠାତ ବେଶୀ ଜୋରରେ କାଶ ଉଠିଲା

ବନ୍ଧୁଆର ପ୍ରବେଶ । ବୟସ ସତେଇଶ କି ଅଠେଇଶ । ବାଙ୍ଗର ଓ କଳା । ଚକ୍‌କଣ ହୋଇ ମୁଣ୍ଡରେ ସିନ୍ଥା ପଡ଼ିଚି ଓ ଖଣ୍ଡେ ମଇଳା ଧୋତି ପାଇକଚ୍ଛ ମାରି ପିନ୍ଧିଚି । ରବୀନ୍ଦ୍ର କୁମାରଙ୍କୁ କାଶିବାର ଦେଖି ଟିକିଏ ଦୂରରେ ଗାଲରେ ହାତ ଦେଇ ଠିଆ ହୋଇ ରହିଲା । ଧୀରେ ଧୀରେ କାଶ କମି ଆସିଲା)

ରବୀନ୍ଦ୍ର କୁମାର—ଉଃ...ଉଃ...ଆଉ କେତେ ଦିନ ?

ବନ୍ଧୁଆ—(ଠିଆ ହୋଇଥିବା ଜାଗାରୁ) ବାବୁ, ଦିନକୁ ଦିନ କଣ ବେମାରି ବଢ଼ି ବଢ଼ିଗଲା ଭଳିଆ ଲାଗୁଚି...ଏଥିରେ ତୁମେ ଆଉ ଭଲ ହବ କଣ ?...ଦିନକୁ ଦିନ କଣ ଝାଟି ପେଣ୍ଡା ହୋଇ ଯାଉଚ...(ଆସ୍ତେ ଆସ୍ତେ ପାଖକୁ ଗଲା)

ରବୀନ୍ଦ୍ର କୁମାର—(ନିର୍ଜୀବ ଭାବରେ ଆଖିବୁଜି) ହୁଁ...ହୁଁ...

ବନ୍ଧୁଆ—ଟିକିଏ ଆଉଁସି ଦେବି ?

(ଅନିଚ୍ଛା ସତ୍ତ୍ୱେ ରବୀନ୍ଦ୍ର କୁମାର ହାତଟା ବଢ଼େଇ ଦେଲେ ।)

ବନ୍ଧୁଆ—(ଆଉଁସି ଦେଉ ଦେଉ) ବାବୁ...ମୁଁ ଗାଁକୁ ଯିବି ..

(ରବୀନ୍ଦ୍ର କୁମାରଙ୍କ ମୁହଁରେ ଭୟର ଚିହ୍ନ ଫୁଟି ଉଠିଲା । କିଛି ସମୟ କଣ ଚିନ୍ତାକରି ତକିଆ ତଳୁ ନିଜର ହାତଘଣ୍ଟା ବାହାର କରି କହିଲେ)

ରବୀନ୍ଦ୍ର କୁମାର—-ବନ୍ଧୁଆ...ଗାଁକୁ ନ ଯାଇ...ଠିକ୍...ଆଉ ଗୋଟିଏ ମାସ...ଏଠି ରହିଗଲେ...ଏଇ ଘଡ଼ିଟା ତତେ ଦେଇଦେବି...

ବନ୍ଧୁଆ—-ମୁଁ ଜାଣେ ତମେ କେବେ ହବ ନାହିଁ—-ଖାଲି ମେଞ୍ଚେ ଲୋଭ ଦେଖାଉଚ ।

ରବୀନ୍ଦ୍ରକୁମାର--(ଆଘାତ ପାଇଲା ପରି) ତତେ ମୋର ଜାମା ପେଣ୍ଟ ଦେଇନ ?

ବନ୍ଧଆ---(ସଲଜ୍ଜ ହସ ହସି) ମୁଁ କଣ ନାହିଁ କରୁଚି ?···ହେଲେ ଏଇଠାରେ ତମର ବେଶି ଲୋଭ ଅଚ୍ଛି···ଯୁନାର ଚଜ କନା·· ବଡ଼ ବାବୁ ହେଇକା ପିବା ପରଠୁଁ ମେତେ ଗାଁ'କୁ ଗ୍ଲୁଡ଼ନା ଯ୍ୟାକୁଇ ଦବ ବେଲ କଇ···

ରବୀନ୍ଦ୍ରକୁମାର---ଏଇଥର ନଷ୍ଟେ ଦେବ···ତୁ ଦେଖ୍···ନଇଲେ ତୁ ଆପେ ନେଇପିବୁ···(ଆଖି ବୁଜିଲେ)

ବନ୍ଧଆ---(କିଚ୍ଛିବେଳ ବାବୁଙ୍କ ମୁଦା ଆଖିକ ଚହିଁ) ବାବୁ---

ରବୀନ୍ଦ୍ରକୁମାର---ଉଁ ?

ବନ୍ଧଆ --ତେମେ ବା'ହେଲ ନାଇଁ କାହିଁକି ବାବୁ ? ପିଲା ମାଇପ ଥିଲେ କଷ୍ଟ ବାଧନ୍ତା ନାଇଁ···

ରବୀନ୍ଦ୍ରକୁମାର---(ମ୍ଳାନ ହସ ହସି ଥରେ ଆଲମାରିର ଉପର ଥାକକୁ ଓ ଥରେ ଟିଣ ଟ୍ରଙ୍କକୁ ଚହିଁ) ମୋ ପିଲାମାଇପ ସେଇଠି ଅଛନ୍ତି (ଠାରି ଦେଖେଇଦେଲେ) ।

ବନ୍ଧଆ---(ଆକାଶରୁ ଖସିଲା ପରି) ବାବୁ, ଏଇନେ ତମ ମୁଣ୍ଡ ଠିକେଣା ନାଇଁ···ଟିକେନାକୁ ଶୋଇପଡ଼ ।

ରବୀନ୍ଦ୍ରକୁମାର---(କିଚ୍ଛିବେଳ ଭାବି) ବନ୍ଧଆ···ଗୋଟେ କାମ କରିବୁ ?

ବନ୍ଧଆ---କୁହ ।

ରବୀନ୍ଦ୍ରକୁମାର---(ହାତ ଦେଖେଇ) ସେ ଟିଣ ଟ୍ରଙ୍କ ଖୋଲି··· ଖାତାଗୁଡ଼ାକ ଖଟ ଉପରେ ରଖ୍···ମତେ ବସେଇ ଦେଇ ଯା···

(ରବୀନ୍ଦ୍ରକୁମାରଙ୍କୁ ବସେଇ, ଦେହରେ ଗୁଦର ଢାଙ୍କିଦେଇ, ବନ୍ଧଆ ବେପରୁଆ ଭାବରେ ଟ୍ରଙ୍କରୁ ପୁଳା ପୁଳା କରି ଖାତା ବାହାର କରି ଆଣିଲା । ରବୀନ୍ଦ୍ରକୁମାରଙ୍କର ମନେ ହେଲା, ଯେମିତି ତାଙ୍କ ନିଜର ହାତ ଗୋଡ଼ କିଏ ଟାଣି ଛିଣ୍ଡେଇ ଦଉଚି । )

ରବୀନ୍ଦ୍ରକୁମାର—(ଖାତାକୁ ଗୃହିଁ) ଆ---ସ୍ତେ···ଆସ୍ତେରେ ବନ୍ଧଆ ···ଛିଡ଼ିଯିବ···ଛିଡ଼ିଯିବ-(କାଶିବା)

ବନ୍ଧଆ—(ଖଟ ଉପରେ ଖେଳା ମେଲା କରି ଖାତାଗୁଡ଼ାକ ରଖିଦେଇ) ହେଲା ନା ଆଉ କଣ ହେବ ?

ରବୀନ୍ଦ୍ରକୁମାର—ତୁ ଯା ଏଥର···ମୁଁ ପରେ ଡାକବି ।

(ବନ୍ଧଆର ପ୍ରସ୍ଥାନ । ଦୁର୍ବଳ ହାତରେ ଗୋଟି ଗୋଟି କରି ପାଣ୍ଡୁଲିପି ଟାଣି ଆଣି ଏଠୁ ସେଠୁ କଣ ସବୁ ଦେଖିବାକୁ ଲାଗିଲେ । ଘଡ଼ିକୁ ଘଡ଼ି ମୁହଁର ଭାବ ବଦଳି ଯାଉଛି । ହଠାତ ଗୋଟାଏ ଖାତା ଗୁଡ଼ିରେ ଜାକି ଧରି ଆସ୍ତେ ଆସ୍ତେ ବିଛଣାରେ ଶୋଇ ପଡ଼ିଲେ । ଆଖି ବନ୍ଦ—ଖାତା ଗୁଡ଼ି ଉପରେ । କିଛି ବେଳ ପରେ ବନ୍ଧଆର ପ୍ରବେଶ ଓ ରବୀନ୍ଦ୍ରକୁମାରଙ୍କୁ ଶୋଇ ପଡ଼ିଥିବାର ଦେଖି ଖାତାଗୁଡ଼ାକ ପୁଣି ବାକ୍ସରେ ରଖିବାକୁ ଯାଉଥିବା ବେଳେ ସେ ଆଖି ମେଲି ଗୃହିଁଲେ । )

ରବୀନ୍ଦ୍ରକୁମାର—(ଅନେକଟା ନିଜକୁ କହିଲା ପରି) ନେଇଯା··· ନେଇଯା···ମୋ ଆଖି ଆଗରୁ ସେମାନଙ୍କୁ ଦୂରକୁ ନେଇଯା ···କେହି ତ ରହିଲେନି···ଆହୁ···ଆଉ···ଏମାନେ ରହି ବା କଣ କରିବେ···ବାକ୍ସରେ ରହି ରହି ଦିନେ ଏମାନଙ୍କୁ ବ

ପୋକ ଖାଇବ···ମତେ ନେଲେ···ମୋ ଜୀବନର ସାଇତା ଧନକୁ ବ ନେବେ···ସେମାନଙ୍କର ବ ବଂଶବାର ଦାବ ଅଛ ···ମଣିଷ ଯେଉଁଠି ରକ୍ତର ମାୟା ଭୁଟେଇ ଦେଇ···ପଦେ କଥାରେ ଦୂରକୁ ଗ୍ଳଯାଏ···ସେଠି ସେମାନେ ବା କାହିଁକି ଗ୍ହିଁବାକୁ ଯିବେ ?···ଅଦ୍ଭୁତ ଏଇ ଦୁନଆ···ବପଦବେଳେ ପରହିଁ ଆପଣାର ହେଇ ଠିଆ ହୁଏ···ଆଉ···ସେତକବେଳେ ମଣିଷ ବୁଝେ···ଏଇ ପରଙ୍କ ନକଟରେ ଆପଣାର ଲୋକେ କେତେ ଶ୍ରେଷ୍ଠ···କେତେ ତୁଚ୍ଛ । (ରବୀନ୍ଦ୍ରକୁମାରଙ୍କର ଶୂନ୍ୟ ଦୃଷ୍ଟି ବଢ଼ଆକୁ କେନ୍ଦ୍ର କର ଘୂରି ବୁଲୁଛି । )

(ବାକ୍ସ ବନ୍ଦ କରବା ପୂର୍ବରୁ ବଢ଼ଆ ଆସି ପାଖରେ ଠିଆ ହେଲା)

ବଢ଼ଆ—(ଗ୍ରନ୍ଥ ଉପରେ ଥିବା ଖାତାକୁ ଲକ୍ଷ୍ୟକର) ସେଇଟା ଦବ ନାହିଁ ? ମୁଁ ବାକ୍ସ ବନ୍ଦ କର ଦଉଚ ?

ରବୀନ୍ଦ୍ରକୁମାର—(ସେମିତ ଶୂନ୍ୟ ଦୃଷ୍ଟିରେ) ହଁ ।

ବଢ଼ଆ—(ବାକ୍ସ ବନ୍ଦ କର) ଖାଇବା ବେଳ ହେଲାଣି—ଆଣିବ ?

ରବୀନ୍ଦ୍ରକୁମାର—(ଖାତାଟା ଖୋଲ) ଆଉ ଟିକଏ ଯାଉ···ତୁ ଖାଇନେ···(କଣ ମନେ କର) ଆଚ୍ଛା, ମୋ ପାଇଁ ଏଇଠି ରଖି ଦେଇ ଯା ।

(ଟେବୁଲ ଉପରେ ଥିବା ଅଇଁଠା ପ୍ଲେଟ ଓ ଗ୍ଳାସ ହାତରେ ଧର ବଢ଼ଆ ବାହାରିଗଲା ଓ କଛି ସମୟ ପରେ କପେ ଗରମ ଦୁଧ ଆଣି ଟେବୁଲ ଉପରେ ରଖି ପ୍ଲେଟ ଢାଙ୍କି ଦେଇ ଗ୍ଳିଗଲା । ରବୀନ୍ଦ୍ରକୁମାର ପାଣ୍ଡୁଲିପି ପଢ଼ୁଛନ୍ତି । ଜଣାଯାଉଛି ସେଥିରେ ତାଙ୍କର ମନ ଲାଗୁ ନାହିଁ— ଏଠୁ ସେଠୁ ପୃଷ୍ଠା ଖୋଲ ଦେଖୁଛନ୍ତି

ମାନ । କିଛି ବେଳ ପରେ ଖାତାଟା ବନ୍ଦ କରି ଶୋଇବାର ଚେଷ୍ଟା କଲେ । ଶୋଇ ବି ପାରିଲେନି—ମଝିରେ ମଝିରେ କାଶି ଉଠି ବ୍ୟତିବ୍ୟସ୍ତ କରି ପକାଉଚି । ଏତିକିବେଳେ ଦାଣ୍ଡ କବାଟରେ କିଏ ହାତ ମାରି ଡାକିଲା)

—ନେପଥ୍ୟ—

ରବୀନ୍ଦ୍ରକୁମାର—(ଚମକି ପଡ଼ି) କିଏ ? କିଏ ଡାକୁଚି ?

—ମୁଁ ସ୍ମୃତି । କବାଟ ଖୋଲ ।

ରବୀନ୍ଦ୍ରକୁମାର—(ଉତ୍ତେଜିତ ହୋଇ) ଏଁ !···ସ୍ମୃତି ଆସିଚି ?··· ସ୍ମୃତି ? (ଉଠିବାକୁ ଚେଷ୍ଟା କରି) ବୁଦ୍ଧିଆ···ବୁଦ୍ଧିଆରେ··· (କାଶି ଉଠିଲା)···ଉଃ···କିଏ ଅଛ···କବାଟ ଖୋଲିଦିଅ··· (ନିସ୍ତେଜ ଭାବରେ) ସ୍ମୃତି··· ସ୍ମୃତି ଆସିଚି···(ବୁଦ୍ଧିଆଠୁ କୌଣସି ଜବାବ ନ ପାଇ, ନିଜେ ଅତି କଷ୍ଟରେ ତଳକୁ ଓହ୍ଲାଇଲେ । ଗୋଡ଼ ଥରୁଚି, ଦେହ ଟଳୁଛି, ମୁଣ୍ଡ ବୁଲାଉଚି । ଟେବୁଲ ରେଁକି ଧରି ଧରି ଦୁ'ତିନି ଖୋଜ ଯାଇଛନ୍ତି କି ନାହିଁ ଗୋଟାଏ ଲମ୍ବା କାଶି ଉଠି ଦୁ'ଝଲକା ରକ୍ତ ବାନ୍ତି ହୋଇଗଲା । ଛାତି ଭିତରେ ଭୀଷଣ କଷ୍ଟ, କିନ୍ତୁ ସେ ଆଡ଼କୁ ନଜର ନ ଦେଇ ବାଁ ହାତରେ ଛାତି ଚିପି ଡାହାଣ ହାତରେ ଟେବୁଲ ଧରି ଉଠିବାକୁ ଚେଷ୍ଟାକରି) ତୁ ଯା'ନାରେ ସ୍ମୃତି···ଖୋଲୁଚି··· ଟିକିଏ ରହ···ମୁଁ ଖୋଲୁଚି···ଉଃ··· (ଉଠିବାକୁ ଚେଷ୍ଟା କଲାବେଳେ ହାତ ବାଜି ଟେବୁଲ ଧାରରେ ଥିବା କାଚ ଗ୍ଲାସଟା ତଳେ ପଡ଼ି ଚୂନା ହୋଇଗଲା । ସେଇ ଶବ୍ଦରେ ଆଖି ମଳି ମଳିକା ଘରେ ବୁଦ୍ଧିଆ ପଶିଲା)

ବୁଢ଼ଆ—(ଆକାଶରୁ ଖସିଲା ପରି ଭାବ ଦେଖେଇ) ଏଁ !! ଇଏ କଣ ? କୁଆଡ଼େ ଯାଉଚ ? ଇସ୍…ଏତେ ଗୁରାଏ ରକତ !! …ତମକୁ ପରା ସେ ବାବୁ କଇ ଯାଇଥିଲେ ଶୋଇ ରହିବାକୁ…ତେମେ ପୁଣି ଗୃଲଲ ? (ହାତ ଧରି ଉଠେଇବାକୁ ଯିବା ବେଳେ)

ରବୀନ୍ଦ୍ରକୁମାର—(ନିଜ ହାତଟା ଟାଣି ନେଇ) କବାଟ ଖୋଲ୍… ଆଗ କବାଟ ଖୋଲ୍‌ରେ ବୁଢ଼ଆ…ସୁର ଆସିଚି…

(ବୁଢ଼ଆ କବାଟ ଖୋଲି ଦେଲା ଓ ଜଣେ ଦାଢ଼ିଆ ଲୋକର ପ୍ରବେଶ । ଦେହରେ ଗେରୁଆ ରଙ୍ଗର ଧୋତି କାମିଜ—ମୁଣ୍ଡରେ ଗେରୁଆ ପଗଡ଼ି । ମୁହଁରୁ ଟୋପା ଟୋପା ଝାଳ ନିଗିଡ଼ି ପଡ଼ୁଛି । ହଠାତ ଘର ଭିତରକୁ ପଶି ଆସି ସେ ଯେମିତି କି ପଥର ପାଲଟି ଗଲା । ରବୀନ୍ଦ୍ର କୁମାର ସେଇ ଆଡ଼କୁ ଅପଲକ ନୟନରେ ଗୃହିଁଛନ୍ତି—ଛାତିଟା ଉଠୁଚି ପଡ଼ୁଚି । ବୁଢ଼ଆ ଆସି ହାତ ଧରି, ବିଛଣା ଉପରେ ଶୁଆଇ ଦେଇ, ପାଉଁଶ ଆଣି ଘର ସଫା କରିବାରେ ଲଗିଲା ।)

ସୁରେନ୍ଦ୍ର—ଭାଇ—(ଦି'ଆଖି ଲୁହରେ ଭରିଗଲା । ତଳକୁ ଗୃହିଁଲେ)

ରବୀନ୍ଦ୍ର—ସୁର…କାହିଁକି ଆସିଲୁ…ଉଃ…ତୁ କାହିଁକି ଆସିଲୁ… ମତେ ଟି.ବି. ହୋଇଚି ··ତୁ ଜାଣିନୁ ପରା…ପଳା…ଜଲଦି ପଳା ଏଠୁ…ଉଃ (କାଶ ଉଠିଲା)

(ରବୀନ୍ଦ୍ରକୁମାରଙ୍କ ପାଦ ପାଖରେ ତଳକୁ ମୁହଁ କରି ବସିଛନ୍ତି ସୁରେନ୍ଦ୍ର । ନିଜକୁ ସଂଯତ କରିବାର ପ୍ରାଣ ପଣ ଚେଷ୍ଟା ସତ୍ତ୍ୱେ ଆଖିର ଲୁହ ବାଧା ମାନୁନି—ଗଡ଼ି ଗୃଲିଛି । ବୋଧହୁଏ

ତାକୁଇ ଲୁଚେଇବାକୁ ସେ ତଳକୁ ମୁହଁ ପୋତି ବସିଛନ୍ତି, ଆଉ ମଝିରେ ମଝିରେ ଗୋଟାଏ ଅସ୍ପଷ୍ଟ ଶବ୍ଦ କରି ତଣ୍ଟି ପାଖରେ ଜମି ଆସୁଥିବା କୋହକୁ ତଳକୁ ପେଲି ଦେବାର ଚେଷ୍ଟା କରୁଛନ୍ତି । ଦୁଇ ହାତରେ ଆଖି ପୋଛି, ଗଳା ଝାଡ଼ି, ସୁରେନ୍ଦ୍ର କଣ କହିବାକୁ ମୁହଁ ଟେକିଲେ)

ସୁରେନ୍ଦ୍ର—ଭାଇ···(ଗଳା ଝାଡ଼ିଲେ) ମୁଁ ଜାଣି ନ ଥିଲି···(ଆଖି ପୁଣି ଲୁହରେ ପୂରିଗଲା) ତନୁ ମତେ ଏବେ କହିଲା···(ପୁଣି ଗଳା ଝାଡ଼ିବା)···

ରବୀନ୍ଦ୍ର କୁମାର—ମୁଁ ଜାଣିଥିଲି ତୁ ଆସିବୁ···କିନ୍ତୁ ମନରେ ଭୟ ଥିଲା···ହୁଏ ତ ଯିବା ଆଗରୁ ତୋ ସାଙ୍ଗରେ ଭେଟ ହେବନି···ଆଜି ମୁଁ ନିଶ୍ଚିନ୍ତ (ତକିଆ ପାଖରେ ଥିବା ବହି ଖଣ୍ଡିକ ସୁରି ହାତକୁ ବଢ଼େଇ ଦେଲେ)

ସୁରେନ୍ଦ୍ର—(ଅନ୍ୟମନସ୍କ ଭାବରେ ବହି ଖୋଲୁ ଖୋଲୁ, ଚମକି ପଡ଼ି) ଏ କ'ଣ କଲି ଭାଇ—ବହିଟା ମତେ ଉତ୍ସର୍ଗ କରିଚ !! ତମକୁ ଆଉ ଲୋକ ମିଳିଲେ ନି···ମୋ ପରି ଗୋଟାଏ ହତଭାଗା, କୁଳାଙ୍ଗାର ହାତରେ ଶେଷରେ—(ଆଉ କିଛି କହି ପାରିଲେନି)

ରବୀନ୍ଦ୍ର କୁମାର—(ଶୁଖିଲା ହସ ହସି) ପଢ଼୍ ଥରେ ସୁରି···କଣ ଲେଖିଥିଲି···ତୋର ମୁହଁରେ ମୁଁ ଶୁଣିବାକୁ ଚାହେଁ···

ସୁରେନ୍ଦ୍ର—(ଗଳା ସଫାକରି, ଥରିଲା କଣ୍ଠରେ)

"ସୁରି,

ଓଡ଼ିଶାରେ ଲେଖକ ହେବା ଗୋଟାଏ ଅଭିଶାପ । ଜୀବନର ପ୍ରତି ରକ୍ତ କଣା ନିଗାଡ଼ି ଯେଉଁମାନଙ୍କୁ ମୁଁ ଲେଖାରେ ରୂପ

ଦେଇଥିଲ, ସେମାନେ ବି ଠିକ୍ ମୋର ପରି ଶେଷ ହେବାକୁ ଯାଉଛନ୍ତି । ସେମାନଙ୍କୁ ଦୁନଆରେ ଠିଆ କରେଇବାକୁ ମୋର ଆଉ ଶକ୍ତି ନାହିଁ—ତୁ ସେମାନଙ୍କୁ ବଞ୍ଚେଇ ପାରିବୁ, ସୁରି ?

ମୋର ଏଇ ଦୁର୍ବଳ ହାତ ଟେକି ଆଜି ତତେ କେବଳ ଆଶୀର୍ବାଦ ହିଁ କରୁଛି—ସୁଖୀ ହ' ।

"ରବିଭାଇ"

(ରବୀନ୍ଦ୍ର କୁମାର ଆଖି ବୁଜି ନିଶ୍ଚଳ ଭାବରେ ପଡ଼ିଛନ୍ତି । ସୁରେନ୍ଦ୍ର ଥରେ ତାଙ୍କ ମୁହଁକୁ ଗୃହିଁଲେ, ତା ପରେ କଡ଼ ତକିଆ ଉପରେ ଭାଙ୍ଗି ପଡ଼ିଲେ) ।

—ପରଦା—

## ସପ୍ତମ ଦୃଶ୍ୟ

କିଛିଦିନ ପରେ—

ସ୍ଥାନ—ନିର୍ଜନ ସମୁଦ୍ର କୂଳ ।

ସମୟ—ସନ୍ଧ୍ୟା ପାର ହୋଇ ଯାଇଛି । ଆକାଶରେ ପଞ୍ଚମୀ ଜହ୍ନ ।

ସେଇ ଅସ୍ପଷ୍ଟ ଚନ୍ଦ୍ରାଲୋକରେ ଦେଖାଗଲା ଜଣେ ଯୁବକ ସମୁଦ୍ରକୁ ମୁହଁକରି ବାଲି ଉପରେ ବସିଛି । ଦିଗନ୍ତ-ବିସ୍ତାରୀ ସମୁଦ୍ରର ହାହାକାର ପରି ତା ନିଜ ଭିତରେ ଅସରନ୍ତି 'ହାହାକାର'ର ଲହଡ଼ି ମୁଣ୍ଡ ଟେକୁଛି ।

ଧୀରେ ଧୀରେ ପଶ୍ଚିମ ଆକାଶରେ ଜହ୍ନ ଲୁଚିଯାଇ ଗୃରି ଆଡ଼ ଅନ୍ଧାର କରିଦେଲା ।

—ପରଦା—

# ବେସୁରା

## ପ୍ରଥମ ଦୃଶ୍ୟ

(କୌଣସି ସହରର ଗୋଟିଏ ବଡ଼ ଦ'ମହଲା କୋଠା—ଗୋଟିଏ ବଖରାରେ ଗାଲିଚା ଉପରେ ଚାରି ପାଞ୍ଚୋଟି ସ୍ତ୍ରୀ ଲୋକ ବସିଛନ୍ତି—ମଝିରେ ଗୃହକର୍ତ୍ତ୍ରୀ ଚନ୍ଦ୍ରମା—ବୟସ ଷାଠିଏ ପାଖାପାଖି—ମୋଟା ଓ ଗୋରା—ଦେହରେ ଚାରିଆଡ଼େ ନାନା ଜାତିର ଅଳଙ୍କାର—ପାଖରେ ବସିଥିବା ଅନ୍ୟାନ୍ୟ ସ୍ତ୍ରୀ ଲୋକମାନେ ଚାଳିଶ ପଇଁଚାଳିଶ ଭିତରେ—ସାଧାରଣ ଚେହେରା ଓ ସାଧାରଣ ବେଶ ଭୂଷା ।)

ସମୟ—ଦ'ପହର ।

ଚନ୍ଦ୍ରମା—ଏ ନଗା'ମା...ପାନଡାଲାଟା ଟିକେ ଏଇଠିକି ଦେଇ ଯିବୁଟି ଲୋ...ମୁଁ ଭଙ୍ଗି—

ସୁଲୋଚନା ବୋଉ—(ବାଧା ଦେଇ)ପାନ ଅଛି ମ,ଥାଉ...ତେମେ ବସ ...ବୋହୂ ନାଇଁକି ? ତେମେ କାଇଁକି ଏଣିକି ଆଉ ଏତେ କାମ କରିବ ମ ?...ଛୁଆଦିନୁ ତ ଏ ପିଲାଙ୍କୁ ଏତୁଟିରୁ ଏତେଟିଏ କରି ଆମ ବଳ ବଅସ ଗଲା...ତେଇଁକି ତାଙ୍କୁ ବାହାସା' କଲୁ ଯେ ସେମାନେ ଆମ କାମ କରିବେ ନାଇଁ ?

ବମ୍ପୀ—ହ, ବୋହୂ !! ଅପା ଆମର ବୋହୂ କରିଛନ୍ତି, ଲୋକ ଦେଖାଣିକୁ...ବୋହୂ ମିଟିଙ୍ଗ୍ ଯିବେ, ସିନେମା ଯିବେ...

ସେ ପର କୁଆଡ଼େ କହୁଛନ୍ତ (ମୁରୁକି ହସି) ଆମ ଶାଶୁ ଥିବା ଯାକେ ଆମେ ମଉଜ ଫୁର୍ତ୍ତି କରିବୁ—ଶାଶୁଙ୍କ ପେଇଁ କାଇଁକି ଖଟିବୁ ?

ପମିବୋଉ—ମଲ, ଚନୁମା କାଇଁକି ବୋହୂ କରିବେ ମ !···
ଚନୁବାପା ପର କହିଲେ 'ତେମେ କିଆଁ ବୋହୂ ବାଛୁଚ ? ପୁଅ ତାର ବାଛୁ—'

ସୁଲେଈ ବୋଉ—(ମୁହଁ ମୋଡ଼, ହସି ହସି) 'ନ ରସି ଭଅଁର ରସିଲ; ଯାଇ ଜୁଇ ଫୁଲ ପାଣିକି ପକେଇ, ପୋକଶୁଙ୍ଘା ମୂଳେ ବସିଲ'···(ଖଞ୍ଜା ଆଡ଼କୁ ଚୁହିଁ ଦେଇ) ମାଲୋ, କୋଉଠି ଥିବ ଯଦ –

ଚନୁମା—(କଥାରେ ବାଧା ଦେଇ ନଠେଇ କରି) ବୋହୂ ନାଇଁମ !
···କୁଆଡ଼େ ଯାଇଚ···କେତେବେଳୁ ଗଲଣି ନା କଅଣ···

ବମା—(ଆଖିରେ ବିଜୁଳି ଖେଳେଇ) ମଲ, କେତେବେଳୁ ଗଲଣି ! (ପମିବୋଉଙ୍କୁ ଚୁହିଁ) ଶୁଣ ବା ଅପାଙ୍କ କଥାକୁ···ବୋହୂ କେତେବେଳୁ ଗଲଣି, ସେ ଜାଣି ନାହାନ୍ତ···(ହସି) ଭଲ ଶାଶୁ ବୋହୂ ହେଇଚ ତେମେ···(ମୁହଁ ମୋଡ଼ି) ମୋ ମା' ଲୋ, ଆମର କଣ ଅଛି ଏତେ କହିବାକୁ···ପଛେରେ ପୁଣି ଗାଳି ଦେବ···(ଅନ୍ୟମାନଙ୍କୁ ଚୁହିଁ) ଯାହା କହନ୍ତ, 'ମୁଁ ଖାଉଥାଏଁ ମୋର ଭାତ, ତୋର କିଆଁ ଗାଲରେ ହାତ' ?

ଚନୁମା—(ଟିକଏ ମୁହଁ ଶୁଖେଇ) ! ନାଇଁମ ମତେ କୋଉଠ କହିଲେ ସିନା ଜାଣନ୍ତ···ସେ ତାଙ୍କର ସୁବିଧା ଦେଖି କାମ କାର୍ଯ୍ୟରେ ବାହାରି ଯା'ନ୍ତ···ମୁଁ କେମିତ ଜାଣିବ ?···ହଁ, ବୁଲନ୍ତୁ···ଆମକୁ କହିବାରେ କଣ ଯାଏ ?···

ସୁଲେଈବୋଉ—ଆଲୋ କଅଁଳ ଲୁହାକୁ ବଲେଇ କାମୁଡ଼େ
ଶାନ୍ତ ମଣିଷ ଦେଖି ସେମାନେ ସେମିତି ଘୋଡ଼ା ଚଢ଼ୁଛନ୍ତି ··
ଯାହା କୁହ, ମୋ ବୋହୂଟି ଏମେଇ ନୁହଁ · କେମିତି ହେବେ ?
···ପର୍‌କୁଟ କଥା···ନୁଚେଇବ କାଇଁକ ? ଏ ବୋହୂ
ଭୂଆଷୁଣୀଗୁଡ଼ାଙ୍କର ଏତେ ଦାଣ୍ଡବୁଲା ମୋ ଆଖି ସହେ ନାହିଁ
···ଦନେ ପୁଅ କହିଲା, "ବୋଉ, ମିନାକୁ ଟିକଏ କଲକତା
ସହର ନେଇ ଯାଉଚ—ବୁଲେଇ ଆଣିବ"···ମୁଁ ଫାଙ୍କେ
ଫାଙ୍କେ ନାହିଁ କର ଦେଲି । ମଲା, ଆମେ ଆସି ବୁଢ଼ୀ ହେଲୁ
···ତଥାପି ଯୋଉ ଥାନରେ ପକେଇବ, ସେଇ ଥାନରେ
ରହିଲୁ···ଏବକୁ ଏବକୁ ସିନା ଦାଣ୍ଡ ଦେଖିଲୁ···ଆଉ
ଏମାନେ ଆଜହୁଁ କଲକତା ସହର ଦେଖିସିବେ !···କଣ
ମୁଁ କହୁଛି ନାଖର କଥା କହିଲି ? କହୁନ—?

(ଜଣେ ଦୁ'ଜଣ ସମ୍ମତିସୂଚକ ମୁଣ୍ଡ ହଲେଇଲେ)

ପମିବୋଉ—(ହୋ, ଆମ୍ଭୁକୁ କିଆଁ ତାଙ୍କ ସାଙ୍ଗରେ ସରି କରୁଚ
ହେ ସୁଲେଈ ବୋଉ ?···ସେମାନେ ଦୁ'ଅକ୍ଷର ବଦେଶୀପାଠ
ପଢ଼ିଲେ, ବରର ହାତ ଧରି ବୁଲିଗଲେ···ଶାଶୁକୁ ନ ପୁଛି
ଯେଣେ ଖୁସି ତେଣେ ଗଲେ···ଆମେ ଆମ ଧିଅକରେ ଏତକ
ଅଙ୍ଗେ ନଭେଇ ଥିଲେଁ ?···ଆମେ ଯଦ ଏମେଇ କରିଥାନ୍ତେ,
ଆମପେଇଁ ଯାହା କହନ୍ତି ଥିଲା 'ପଥ ପଟ୍ଟର ପିତା ଘର ଯିବୁ,
ଆଉ ଅଯୋଧ୍ୟା ମନେ ନ କରିବୁ' ।

ସୁଲେଈ ବୋଉ—ହଉ ଏବେ, ଆମ କଥା ଛାଡ଼ ଦଅ···ଏଇ
ଚନୁମା (ତାଙ୍କୁ ଗୃହିଁ ଦେଇ) କେଡ଼େ ଅପୂସରେ ପିଲା ଦନୁ
ବଢ଼ି ଆସିଚନ୍ତି···ତାଙ୍କର କୋଉ କଥାର ଅପୂରୁବ ଥେଲା

କଇଲ ଭଲ ? କାଇଁ, ତାଙ୍କ ଝିଅ ତ ବାହା ହେଇ ଏମିତି ନାଁ ପକେଇ ନାହିଁ ?···(ଚନୁମାଙ୍କୁ ଚାହିଁ) ଫେନ୍‌ ପାଇଛନ୍ତି ପରା···ଆଉ ଏଗୁର — ଡୁଚ୍ଛା ନାଁ ପକେଇ ଗୁରାକ···

ଚନୁମା — ନାଇଁମ·· ମୋ ଚନୁ ସେମିତି ନୁହେଁ···ତା'ର ତ ଭାଗ୍ୟକୁ ଖଣ୍ଡେ ରାହାବାର୍ଲି ଶାଶୁ···ସିଏ ମୋ ଝିଅ ବୋଲି ଖାଲି ଜିଭ ଓଦା କରି ଦାନ୍ତ କାମୁଡ଼ି ଚଡି ରଇଚୁ···ଯାହାକୁ ଦଇବ ଯାହା ଖଞ୍ଜିଚି···

ସୁଲେଈ ବୋଉ — (ପମି ବୋଉଙ୍କୁ ଚାହିଁ) ତେମେ ଜାଣି ନ, ମୁଁ ଗତ ସାଲ ଏଠିକି ଆଇଥେଲି···ସେତେବେଳକୁ ଆମ ବାବୁ ଏଠିକି ବଦଲି ହେଇ ଆଇ ଥା'ନ୍ତି···ଆମ ବାବୁଙ୍କର ଆଉ ଚନୁ ବାପା ବାବୁଙ୍କର ଭାରି ଭାବ···ଏମିତି ଯେ ଦହେଁ ଦହାଙ୍କୁ ନ ଦେଖିଲେ ବଣା ହୋଇଯିବେ···ଆମେ କୋଠରୁ ଚାଇ ନ ଥାଉ ବୋଲି ବାରି ହଇରାଣ ହଉଥାଉ । ଏଇ ଚନୁ ମାଙ୍କ ବସାରେ ଦନା କେତେ ରଇଲୁ···ସେଇ ଚନୁଟା କଥା ପରା ମୋର ଏଯାଏଁ ମନେ ଅଛି···ଭାରି ମିଶାଣ ପିଲ୍‌ଟିଏ, ପୁଣି ଏମେତି ଧୀର ସ୍ଥିର ଯେ ନାହିଁ ନ ଥିବ···

ପମିବୋଉ — ହବ ନାଇଁ ? ଯେମିତି ମା'ଙ୍କୁ ସେମିତି ଝିଅ···ବଡ଼ ଘର, ବଡ଼ ମନ···ଏଇ ଚନୁ ବାପା ସାହେବଙ୍କ ନାଁ କହିଲେ ଦୁନିଆଁରେ ନ ଚହ୍ନିବ କିଏ ? ଚନୁ ମାଙ୍କୁ ବି ନ ଚହ୍ନିଚି କିଏ କହୁ-ନା ?

ଚନୁମା — (ଟିକିଏ ନଉନ ହେଇ) ନାଇଁ ପମି ବୋଉ, କିଏ କାହାଁକି ମନେ ଚହ୍ନିବାକୁ ଯିବ ? ଆମେ କୋଉ ଦାଣ୍ଡକୁ ଯାଉଚୁ ନା ସଭା ସମିତି କରୁଚୁ ଯେ ଲୋକେ ଆମକୁ ଚହ୍ନିବେ ?

ବମ୍ମା—(ହସି) ହେଁ—ହେଁ, ଅପା ତ ନଇଲେ ଗଜ ମୂରୁଖ ! ଆଗୋ, ତମର ପାଶ୍ କଲା ବୋହୂ ଯୋଉ ଚୁଲ୍ଲା ମୁଣ୍ଡିକୁ, ଆମ୍ଭେ ବ ସେଇ ଚୁଲ୍ଲାମୁଣ୍ଡିକୁ···ତମ ବଡ ଘର କଥା ଭିନେ ହେଇପାରେ, ନଇଲେ—

ଚନୁମା—(ବାଧା ଦେଇ) ହଅ, ବଡ଼ ଘର ! କିଚ୍ଛି ନାହିଁ—ସେଇ କାନ୍ଧରେ ଯୁଆଳି ପଡ଼ିଲେ ଆପେ କଚିବେ, ଯିବେ କୁଆଡ଼େ ? ପିଲାଟା—

ଗଙ୍ଗା—(ବମ୍ମାକୁ ଚାହିଁ) ମୁଁ କେତେଥର ମନରେ କରେ ଏଠିକି ଆସିବାକୁ, ଆମ ବାବୁ ହସନ୍ତି···କହନ୍ତି ବାମନ ହେଇ କାହିଁକି ଚାନ୍ଦକୁ ହାତ ବଢ଼ଉଚ ?···ଆଜି ଭାଗ୍ୟକୁ ସୁନେଇ ବୋଉଙ୍କ ଭେଟ ମିଳିଗଲା ବୋଲି ସିନା··(ଘର ଚାରିପଟକୁ ଆଖି ବୁଲେଇ) କେତେ ବଖରା ଘର ବା ? କଣ କେତେ ସାହାଲାଟାଏ ଦିଶୁଚଅ···ଉପରେ କେଇ ବଖରା ଘର କି ?

ପମିବୋଉ—ମଲା ଯାଉନ, ଦେଖି ଆସିବ···(ହସି)ଆଉ ନଇଲେ ···ଏଇଠି ବସି ଘର ଗଣୁଚନ୍ତି···

ଚନୁମା—ବସ ମ ! ଘର କଣ ଦେଖିବ ?···ଆଉ ଥରେ ଆଇଲେ ଦେଖିବ ପଛେ···ବୋହୂ ତ ତା' ଘରେ ତାଲା ଦେଇ, ଚାବି ନେଇ ଯାଇଥିବ···ଆଉ ବଖରାଏ ବୋଲି ଘର—କଣ ଯାଇଁ ଦେଖିବ ?

ବମ୍ମା—(ଠିକଏ ମୁରୁକି ହସି) ବାଙ୍କା ! ଅପାଙ୍କ ଘରେ କେତେ ଚୋର ! ହେଁ ହେଁ, କୁଆଡ଼େ ଯିବାକୁ ହେଲେ ପୁଣି ଘରେ ତାଲା ଦେଇ ଯାଉଚନ୍ତି···

ସୁଲେଖଣ ବୋଉ—(ମୁହଁ ମୋଡ଼ି) କଏଣ ଆଉ ଶୁଣିବ···ନଦେଖିଲା ଲୋକେ ଦେଖ, କଇଁଚ କାଢିଚ ବେକ···ବୋହୂ ଘର ଛାଡ଼ିଗଲ ବୋଲି କଣ, ଘରେ ଶାଶୁ ନାହିଁ ? (ନିଶ୍ୱାସ ଛାଡ଼ି) ବଖରାରେ ପୁଣି ତାଲା ଦେଇଯାଉଚନ୍ତି !

ଚନ୍ଦ୍ର ମା—ହଉ, ଯାଆନ୍ତୁ···ଭଲ କଥା—ଆମେ କାଇଁକି ତାଙ୍କ ବଖରା ଏତେ ଜଗି ବସିବୁ ? ସେ ତାଙ୍କ ନିଜ ବସ୍ତୁକୁ ନିହ୍ୱପାଜତ କରିବାକୁ ଶିଖନ୍ତୁ—କ୍ଷେତି କଣ ?

ଗଙ୍ଗା—(ଏତେବେଳ ପରେ ବୁଝିପାରି, ବନ୍ଧାକୁ ଚାହିଁ) ମୋ ମାଆ ଲୋ ! ବୋହୂ—ଏଡ଼କ ଖଣ୍ଡେ କି ? ମୁଁ ଜାଣି ନ ଥିଲି—

ସୁଲେଖଣ ବୋଉ—ହେଁ, ହେଁ,···ରଜା କହିଲେ ହରିଷେ, ମନ୍ତ୍ରୀ ବୁଝ୍ୂ ବୁଝ୍ୂ ଗଲି ବରିଷେ ।

(ଏତିକବେଳେ ଗୀତାର ମୁହଁ ଦୁଆର ବନ୍ଧ ପାଖରେ ଦେଖାଗଲା, ସ୍ତ୍ରୀଲୋକମାନଙ୍କୁ ଦେଖି ଖସି ପଡ଼ିଥିବା ଲୁଗା ପୁଣି ମୁଣ୍ଡରେ ଟାଣି ଦେଇ ସେ ଘର ଭିତରେ ପଶିଲା— ଶ୍ୟାମଳ ବର୍ଣ୍ଣ ଓ ଅତି ସାଧାରଣ ଚେହେରାର ଝିଅଟିଏ— ବୟସ ପଚିଶ ଛବିଶ) ।

ବନ୍ଧା—(ଗୀତାକୁ ଦେଖି) ହେଇଟି ବୋହୂ ଆସିଲାଣି ।

(ସମସ୍ତେ ବୁଲିପଡ଼ି ଚାହିଁଲେ ଓ ଗୀତା ଆସି ବନ୍ଧାଙ୍କୁ ମୁଣ୍ଡିଆ ମାରିଲା)

ବନ୍ଧା—(ହସି) ବୁଢ଼ୀଟିଏ ହେଇଥା···ଅଇଛୁଣିକା ତୋ'ର କଥା ପଡ଼ିଥିଲା । ତୋର ବହୁତ ଆୟୁଷ···(ଟିକିଏ ରହି) କେତେ ବେଳେ ଆଇଲୁ ?

ଶାନ୍ତା—(ଆଶ୍ଚର୍ଯ୍ୟ ହୋଇ) କାହିଁକି ମ—ମୁଁ କୁଆଡ଼େ ଯାଇଥିଲି କି ? (ହସି) ତମେ ମାଉସୀ ଯେତେବେଳେ ଆସିଲ ଖାଲି ଲୁଚି ଲୁଚି ଖସି ଯାଉଛ ।

ବଳମ—(ଚିନୁମାଙ୍କୁ ଚାହିଁ) ଦେଖ ବା, ମୁଁ କୋଉଠି ଲୁଚି ଲୁଚି ଖସି ଯାଉଚି ! ଯେତେବେଳେ ଆସିଲୁ, ତୋର ତ ଦେଖା ନାହିଁ···କୁଆଡ଼େ ନାଇଁ କୁଆଡ଼େ ଯାଇଥିବୁ ।

ଶାନ୍ତା—(ଥଟ୍ଟା କଲା ପରି) ହଁ, ଏହିକ୍ଷଣି ଯେମିତି ଯାଇଥିଲି—

ଚିନୁ ମା—ନାଇଁ ବୋହୂ, ମୁଁ ଭାବଥିଲି ତୁ ନାହିଁ ବୋଲି··· ଭାବିଲି ଏତେବେଳ ହେଲାଣି ଦେଖା ନାହିଁ—କୁଆଡ଼େ ଯାଇଥିବ ପରା !

ଶାନ୍ତା—(ବିରକ୍ତି ଚାପି, ଓଠରେ ହସ ଖେଳେଇ) ଆପଣ ଅନୁମତି ନ ଦେଲେ ମୁଁ କୁଆଡ଼େ ଯାଆନ୍ତି ? କେବେ କଣ ଯାଇଚି ?

ଚିନୁ ମା—ହଁ, ମୋର ଭୁଲ ହୋଇଥିବ···ବୁଢ଼ୀ ହେଲିଣି · ସବୁ କଥା ଏଣିକି ଆଉ ମୋର ମନେ ରହୁ ନାହିଁ···(ଅନ୍ୟମାନଙ୍କୁ ଚାହିଁ) ସତରେ ମ !

ସୁଲେଖା ବୋଉ—(ମୁହଁ ମୋଡ଼ି) ହଁ, ଶାଶୁ କହିଦେଲେ ତ କଣଟା ହୋଇଗଲା ? (ଚିନୁମାଙ୍କୁ ଚାହିଁ ଓ ତାଙ୍କ ମନର ଭାବ ଠଉରେଇ ନେଇ) ଏଥିପାଇଁ ଏତେ ଗୋଟାଏ ବଚସା କଣ ? ତୁ ତ ବୋହୂ, ତୁ କାହିଁପାଇଁ ବାହାକୁ ନଉ ! (ମୁହଁ ବୁଲେଇ ନେଲେ)

(କିଛି ସମୟ ପରେ ଶାନ୍ତା ଉଠି ଚାଲିଗଲା – ତା ଯିବା ବାଟକୁ ଚାହିଁ)

ବନ୍ଧୀ—(ଚୁପ୍ ଚୁପ୍ କରି) ମଲି, ପଳଉଚ କାହିଁକି ମ ? କବା କଥାଟାଏ କହିଦେଲେ ଯେ ଦାହରେ ଛଳ ପଶିଗଲା । ଏବେ କାଳ ହେଲା ପରା ସେଇଆ—ଛୁଇଁଲେ ଛଅ ଘା ।

ସୁଲେଖ ବୋଉ- ବୋହୁ ତ ଜାଣି ଖଣ୍ଡେ ! ଇଏ ଚନ୍ଦ୍ରମାଙ୍କର ଏକବାରେ ଓଲଟା—ଏ ଆମର ଯେତିକି ଶାନ୍ତ, ସେ ସେତିକି ଦୁଷ୍ଟ...ଚନ୍ଦ୍ରମାଙ୍କ ଅନ୍ତେ ଏ ଘର କିଏ ମାଡ଼ିବ ଲୋ ମା । ଶାଶୁ ପଦେ ଭଲରେ କହିଦେଲା ଯେ ଗଲା ବାଜିଲା ତ ।

ପମି ବୋଉ—ଆଗୋ, "ବାଆ ମୁଠା କଲି, ବାଆ ମୁଠା କଲି, ବାଆ କି ମୁଠାରେ ରହିବ ? ସାତଥର କରି ବୁଝେଇ କହିଲେ ପର କି ଆପଣା ହୋଇବ ?"

ଚନ୍ଦ୍ରମା—(ସୁଲେଖ ବୋଉକୁ ଚାହିଁ) କାହିଁକି ନ ମାଡ଼ିବ ? ଯେତେ ହେଲେ ଏଇଟା ମୋ ଘର ।

(ନଡାମା ଗୃହକର୍ତ୍ରୀ ଥାଳିଆରେ ପାନ ଆଣିଦେଲା—ହାତରେ ପାନ ଧରି ଜଣେ ଜଣେ କରି ଉଠି ଠିଆହେଲେ ଯିବାକୁ)

ସୁଲେଖ ବୋଉ—ଚନ୍ଦ୍ର ମା, ମୋ ପୁଅର ଚାକିରି କଥାଟା ଟିକିଏ ସାହେବଙ୍କୁ ଆଉ ଥରେ କହିବ...ସେ ଟୋକାଟା ପରା ମୋ ମୁଣ୍ଡ ଖାଇଲାଣି...ମୁଁ ତାକୁ କହୁଚି, ରହ, ମୁଁ ଚନ୍ଦ୍ର ବାପା ସାହେବଙ୍କୁ କହି କରେଇ ଦେବି ।

(ଚନ୍ଦ୍ର ମା ଗମ୍ଭୀର ଭାବରେ ମୁଣ୍ଡହଲେଇ ସମ୍ମତି ଜଣେଇଲେ)

ଗଙ୍ଗା—(ଠିଆ ହୋଇ) ଥା' ଯାଉଚ... ଗାଳି ଦେବ ନାହିଁ... ।

(ସମସ୍ତେ ଧୀରେ ଧୀରେ ବାହାରିଗଲେ — କେବଳ ଚନ୍ଦୁ ମା ଦୁଆର ବନ୍ଧରେ ଛିଡ଼ା ହୋଇ ଅନ୍ୟମନସ୍କ ଭାବରେ କଣ ଭାବୁଥିଲା ବେଳେ ଅନ୍ୟ ପଟରୁ ସୀତା ଘର ଭିତରକୁ ପଶିଲା)

ସୀତା — ଆହା, ପଳେଇଲେ କି ?···ମତେ ପରା ଟେଣେ ଲଏ ଟୋଗାଏ କାମ ଧରେଇ ଦେଲେ (ଚୁ' ଚୁ' ମାରିବା)

ଚନ୍ଦୁ ମା — (ସୀତାକୁ ଡାକି) ହେଇଛି ତ ବୋହୂ, ମୁଁ ଜାଣି ଜାଣି କହୁଥିଲି ତୁ ନାହିଁ ବୋଲି···କାଲିକି ସମସ୍ତେ ତୋ ବଖରାରେ ପଶି ଏଇଟା ସେଇଟା ଦେଖିବେ ?···ପୁଅ ସେଗୁଡ଼ାକ ସୁଖ ପାଏ ନାହିଁ···ସେଇଥି ପେଇଁ ମିଛେରେ କହିଦେଇଥିଲି···

ସୀତା···(ମୁହଁ ମୋଡ଼ି) ହ, ସେଥିରେ କଣ ଅଛି ? ଯିଏ ଯାହା ଉଚିତ ଭାବୁଚନ୍ତି କହି ଦଉଚନ୍ତି (ସୀତା ବାହାରି ଚାଲିଗଲା ଓ ଚନ୍ଦୁ ମା ଦାନ୍ତ ରଗଡ଼ି ତା ଯିବା ବାଟକୁ ଚାହିଁ ରହିଲେ)

— ପରଦା —

## ଦ୍ୱିତୀୟ ଦୃଶ୍ୟ

ପରଦିନ — ସମୟ ଦିନ ଏଗାରଟା ।

(ସେଇ ଘର, କିନ୍ତୁ ଉପର ମହଲାର ଗୋଟିଏ କୋଠରୀ ଭିତରକୁ ଚାହିଁଲେ ଦେଖାଯିବ ଦୁଇଟା ଖଟ, ଗୋଟାଏ ଟେବୁଲ, ଦୁଇଖଣ୍ଡ ଚୌକି ଓ ଗୋଟିଏ ବଡ଼ ଆଲମାରୀ ଅଛି — ଟେବୁଲ ଉପରେ ଗୁଡ଼ାଏ କାଗଜପତ୍ର ଗଦା ହୋଇଛି ଓ ଏଠି ସେଠି ଫାଲତୁ ଲୁଗା ଝୁଲୁଛି — କଛି ଚିରା କାଗଜ

ପବନରେ ଉଡ଼ି ଏଠିସେଠି ପଡ଼ୁଛି ଓ ଖଟରେ ଶୋଇ ସୀତା ଖବର କାଗଜ ପଢ଼ୁଛି—ଚନ୍ଦୁ ମା ବଖରା ଭିତରକୁ ପଶିଲେ)

ଚନ୍ଦୁ ମା—ବୋହୂ !

ସୀତା—(ଖଟରୁ ଉଠିପଡ଼ି) ଆଜ୍ଞା !

ଚନ୍ଦୁ ମା—(ଚାରିଆଡ଼କୁ ଚାହିଁ ଟିକଏ ବିରକ୍ତ ହୋଇ) ଇସ୍... ଏ ଘର କ'ଣ ହେଇଛି ! କଣ ଝାଡ଼ା ଝାଡ଼ି ହୁଏ ନା ନାହିଁ ? ...ଖାଲି ସବୁବେଳେ ବହି ଧରି ବସିଲେ କଣ ହବ ?

ସୀତା—କେତେବେଳେ ପଢ଼ିଲି ଯେ, କହୁଛନ୍ତି ? ମୁଁ ତ ଘର ମଇଲା କରେ ନାହିଁ...ଆପଣଙ୍କ ପୁଅ ଏମିତି କରନ୍ତି...।

ଚନ୍ଦୁ ମା—ହଁ ପୁଅ କଲେ କଲା...ତୋର କଣ ଏଇଟା କହିବା କଥା ?...ମାଇକିନିଆ ଝିଅ ହେଇ ସରମ ଆସୁ ନାହିଁ ? ମାଇକିନିଆ ଝିଅର ଭୂଷଣ ହେଲା ଲାଜ...ତୋର କଣ ଟିକିଏ ଲାଜ ଆସୁନାହିଁ ମୋ ଆଗରେ ? ଆଉରି କହୁଛି କଣ ନା ପୁଅ ମଇଲା କରେ !

ସୀତା—(ମୁହଁ ବୁଲେଇ) କରନ୍ତି ତ...

ଚନ୍ଦୁ ମା—(ଚିଡ଼ି ଯାଇ) ତୁ ତେବେ ଆଉ କଣ କରୁଚୁ ? ପୁଅ ମୋର ହଜାରେ ମଇଲା କଲେ ବି ତୋର ସଫା କରିବା କଥା ।

ସୀତା—(ମୁହଁ ମୋଡ଼ି ଅନ୍ୟ ଆଡ଼କୁ ଚାହିଁ) ମତେ ଇଏ ମନା କରିଛନ୍ତି...ତାଙ୍କ ଜିନିସ ମୁଁ ଛୁଇଁବି ନାହିଁ...ତାଙ୍କର କଣ ଗୋଳମାଳ ହେଇଗଲେ ପୁଣି ବେଶି ଖରାପ ହବ ।

ଚନ୍ଦ୍ରମା—(କାଗଜ ପତ୍ର ସଜାଡ଼ିବାକୁ ଯାଇ) ଛିଃ···ଏଠି ପୁଣି ଲକ୍ଷ୍ମୀ ରହିବେ !···ସେଇଥିପାଇଁ ପୁଅର ଟିକିଲାଭ ଆଗୋଜ ନାହିଁ···ହଉ, ତମ କପାଳ ତମେ ଭୁଞ୍ଜିବ—ମୋର କଣ ଅଛି ?···ତମ ଦୁଃଖ କଷ୍ଟରେ ଭାଗ ନବାକୁ ଆମେ ତ ଆଜ ସେ ଘରରୁ ଚାଲିଉଠି ଆସିବୁ ନାହିଁ···ତମେଇ ଭୋଗିବ···

ଶାନ୍ତା—ମା, ଆପଣଙ୍କର ଏଥିରେ ଚିଡ଼ିବାର କ'ଣ ଅଛି ? ଅକାରଣରେ ଖାଲି ନିଜକୁ କଷ୍ଟ ଦେଉଛନ୍ତି ସିନା ! ତାଙ୍କର ଖରାପ ହେଲେ ସେ ଭୋଗିବେ ( ଆଖିର ଲୁହ ଲୁଚେଇ ) ସମସ୍ତେ କୋଉଠୁ ବଡ଼ ହୋଇ ପାରିବେ ?

ଚନ୍ଦ୍ରମା—ନ ହେଲା ଏବେ···ତୁ ବୋହୂଟା ହୋଇ ଏ କଥା ବୁଝିବୁ ଆଣିବୁ ? ମୋ କଥାକୁ ତୁ ପୁଣି ବାଛିବୁ !···ଏବ କାଳ ହେଲା ପରା ସେଇଆ···ଭଲ କହିଲେ ଭେଲ—

ଶାନ୍ତା—(ବାଧାଦେଇ) ମା, ମୁଁ ତ କିଛି ବାଛୁ ନାହିଁ···(ନରମି-ଯାଇ) ଆପଣ ମୋର ମାଆ ··ମୁଁ ପିଲାଟା କଣ ଜାଣିଛି ? ମତେ ଯାହା ବତେଇବେ ମୁଁ ସେଇଆ କରିବି···ଆପଣ 'ଆଜ ସଜାଡ଼ି ଦିଅନ୍ତୁ, ଦେଖିବେ କାଲିକି ସେ ପୁଣି ମଇଲା କରି ଦେଇଥିବେ ।

ଚନ୍ଦ୍ରମା---ଯେତେ ମଇଲା କଲେ ବି ଆମର ସଜାଡ଼ିବା କଥା···

(ପଚ୍ଛଆଡ଼େ ଥରେ ମୁହଁ ମୋଡ଼ି ଶାନ୍ତା ଚନ୍ଦ୍ରମାଙ୍କ ସାଙ୍ଗରେ ବସି କାଗଜପତ୍ର ସଜାଡ଼ିବାରେ ଲାଗି ପଡ଼ିଲେ ଓ ଜାଣି ଜାଣି କେଇ-ଖଣ୍ଡ ଜରୁରୀ କାଗଜପତ୍ର ଏପଟ ସେପଟ କରିଦେଲେ )

ଚନ୍ଦ୍ରମା– ଏଥର ଘରଟା କେତେ ସୁନ୍ଦର ଦିଶିଲା ଦେଖିଲୁ···
ବୋହୂମାନଙ୍କର ସିନା ଏଇଟା ଦେଖିବା କଥା···ଆମର
ଏବକାଳ ବୋହୂମାନେ ତ ଖାଲି କହୁଛନ୍ତି ପଢ଼ିବୁ –
ପଢ଼ିବୁ –ଆଉ ଘର କାମ କଣ ଏକା ଶାଶୁ କରୁଥିବ ?

ଶାନ୍ତା---(ହସି) ମୁଁ କଣ ଜାଣି ନାହିଁ କି ? ବୋହୂ ଥିଲାବେଳେ
ଶାଶୁ ଘରର କିଛି କାମ କରିବା କଥା ନୁହେଁ ··କିନ୍ତୁ ମା···
ଆପଣ ଏ ଘର ଗୋଟାକର କାମ କରି କରି ଆମ ମୁହଁ
ବଢ଼େଇ ଦେଇଛନ୍ତି—ଏଇକ୍ଷଣି ବାହୁଲେ ଆଉ କଣ ହେବ ?
ସତରେ ମା, ମୁଁ ଘରକୁ ଗଲେ ଖାଲି ପରା ଆପଣଙ୍କ ପ୍ରଶଂସା
କରେ । ମୋ ବୋଉ ପରା କହେ ତୋ କପାଳରେ ଥିଲା-
ବୋଲି ତୁ ଏତେ ଭଲ ଶାଶୁ ପାଇଛୁ ··

ଚନ୍ଦ୍ରମା—ତୁ ପରା କଣ କହୁଥିଲୁ ତୋ ଅପା ଘରକୁ ଯାଇଥାନ୍ତୁ
ବୋଲି···କାହିଁ ଗଲୁ ନାହିଁ ତ ? ···ହଁ ତେରି ବି ହେଇ
ଗଲଣି, ପରକୁ ଯିବୁ ଯେ ଘଡ଼ିଏ ପହଟେ ବସିକରି ଆସିବୁ···
ମୁଁ ବି କେତେ ଦିନ ହେଲାଣି ତାକୁ ଦେଖି ନାହିଁ···କେତେ
ବେଳେ ଯିବ ? ଏ ଯୋଉ ଘର ହେଇଚି ଠିକଏ ନିଶ୍ୱାସ
ମାରିବାକୁ ତର ନାହିଁ···ମୁଁ ଯାଏ ଲୋ ମା···ତେଣେ
କେତେ କାମ-- (ଚନ୍ଦ୍ରମା ବାହାରି ଚାଲିଗଲେ)

ଶାନ୍ତା---(ମନେମନେ) ବୁଢ଼ୀ ପକ୍କା ଖଟେଣି·· ଇଏ ପୁଣି କାମ କରି
କରି ନିଶ୍ୱାସ ମାରିବାକୁ ତର ପାଉ ନାହିଁ···ଖଟରେ ଗଡ଼ି
ଗଡ଼ି ଖୁସାମତିଆଙ୍କଠୁ ଖୁସାମତ ଶୁଣି ଶୁଣି ଘର ଗୋଟିକ
ବୁହାଇ ଦେଇ ସାରିଲାଣି···ଏମିତିକା ଲୋକକୁ ଆଉ ତ କିଛି
ଦରକାର ନାହିଁ—ଖାଲି କଅଁଳ କଥା ପଦେ କହି ପଛରେ

ବୁଝାଏ ଦେବ···ବୁଢ଼ୀ ଦାଣ୍ଡ ଲୋକଙ୍କ ପାଖରେ ଏମିତି କଅଁଳ କଥା କହିବ ଯେ ସତେ କ ମାଡ଼ ଖାଇ ଖାଇ ସୁରଟା ନଇଁ ଯାଇଚି···ଆଉ ପଛରେ ଠୋସ୍ କଥା ଶୁଣୁଥା ···ଠିକ୍ ମା ଝିଅ ଦହେଁ ସମାନ---ଗୋଟିଏ ଡେମ୍ଫର ଫୁଲ —ଫାପୁଲ କାଡ଼ି ଲୋକଙ୍କ ଆଗରେ ମିଛ କହି ଆଜ ମୋ ଉପରେ ସେହି ରାଗ ସୁଝେଇ ଦେଇଗଲା···ରହ, ମୁଁ ବି ପାନେ ଦେବ ଯେ---(ଗୀତା ପୁଣି ଖଟ ଉପରକୁ ଫେରିଯାଇ ଖବର କାଗଜ ହାତରେ ଧରିଲା )

— ପରଦା --

## ତୃତୀୟ ଦୃଶ୍ୟ

(ସେହିଦିନ ଉପର ବେଳା ସଂଧ୍ୟା ପାଞ୍ଚଟା—ସ୍ଥାନ ସେହି ଘର---ଚିନୁମାଙ୍କ ବଖରା---ଚିନୁମା ଶୋଇଛନ୍ତି---ଜଣେ ସ୍ତ୍ରୀଲୋକ ଗୋଡ଼ ଘଷି ଦେଉଚି ଓ ଆଉ ଜଣେ ଦୂରରେ ବସିଛନ୍ତି ]

ଚିନୁମା---ଥାଉଲୋ ନିତା ମା, ଥାଉ···ତୁ ଏଥର ବସ

ନିତା ମା—( ଟିକିଏ ମୁହଁ ଶୁଖେଇ ) ଏ ମା, କାଲିଁକି ମନା କଲେଣି ସାଆନ୍ତାଣୀ···କଣ ଭଲ ଲାଗୁ ନାଇଁ କି ?

ଚିନୁ ମା—(ଟିକିଏ ହସି) କହିଲି ପରା ଥାଉ ବୋଲି···କଣ ଲାଗିପଡ଼ି ଘଷୁଥିବୁ କି ? (ନିତା ମାକୁ ହସିବାର ଦେଖି ) ଏଁ ବେଲି ଖେଳୁଚି !···ହଉ ଘଷ୍ ମୋର କଣ ଗଲା ?···କେତେ ଘଷୁଚୁ ଘଷେ —

ରଘୁବୋଉ—ଘଷ୍ଟ, ଘଷ୍ଟ···ଦେହରୁ ମଳର ଛୁଡ଼ିଯିବ···ତମକୁ ତ ମୁଁ କେତେ କହୁଛି, ଆସ ଟିକିଏ ଘଷି ଦିଏଁ···ତମେ କେବେ ଦେଖେଇଲ ନାହିଁ···ନହେଲେ ମୁଁ କଣ ଦେହପା'ରେ ଟିକିଏ ହାତ ବୁଲେଇ ଦିଅନ୍ତି ନାହିଁ···?

ଶନୁ ମା—ଏଁ କଣ କହୁଛ ? ତମେ ପୁଣି ଆସି ମୋ ଦେହରେ ହାତ ଦବ ?···ତମ ପୁଅ ଜାଣିଲେ କଣ କହିବ ତମକୁ ?

ରଘୁବୋଉ---ଆଉ ! କେଡ଼େ କଥାଟାଏ କହିଲ !! ମୋ ପୁଅ ଆଜି ଗୃହକର୍ତ୍ତା ହେଲା ବୋଲି କଣ ମୁଁ ସରଗକୁ ଉଠି ଗଲି କି ? ତା'ର ମାଇପ ହାତରେ ମୁଁ ଏବେ ତମକୁ ଘଷେଇ ଦେବି··· ମୋ ବୋହୁ ମତେ ଘଷିବା, ତମକୁ ଘଷିବା---ଏକା କଥା ନୁହେଁ ?···

(ସୀତା ଘର ଭିତରକୁ ପଶିଲା ଓ ଶନୁମାଙ୍କୁ ଘଷା ଖାଉ-ଥିବାର ଦେଖି)

ସୀତା---ମା, ଆପଣଙ୍କ ଦେହ କଣ ହଉଛି କି ? (ଟିକିଏ ଦୋ ଦୋ ପାଞ୍ଚ ହୋଇ) ଆସନ୍ତୁ ମୁଁ ଘଷି ଦେବି । (ନତାମା ପାଖକୁ ଯାଇ ଶାଶୁଙ୍କ ଗୋଡ଼ରେ ହାତ ରଖିବା)

ଶନୁ ମା—ନାହିଁମ ବୋହୁ, ତୁ ବସ୍···ସେ ଏମିତି ଘଷୁଥିଲା ନା ···ମୋ ଦେହ କିଛି ହଉନାହିଁ ମ···

ନତା ମା—ହଁ, ହଁ ଘଷନ୍ତୁ,ଘଷନ୍ତୁ···ବୋହୁ ତ···ଏବେ ନ ଘଷିଲେ ଆଉ କେବେ ଘଷିବେ ?

ରଘୁବୋଉ—ମଲା କାହିଁକି ମ ?···ଶାଶୁ ବଞ୍ଚିଥିବା ଯାଏ ଘଷିବେ —କାହିଁ ନ ଘଷିବେ··· ? ଶାଶୁଙ୍କର ସେବା କରିଥିଲେ ମୁକ୍ତି ପାଆନ୍ତି···ଶାଶୁ ଶଶୁର ସେବା ଦେବତା ସେବାଟିକି ?

ଚନ୍ଦୁ ମା—ନାଇଁ ଲୋ ବୋହୂ, ଥାଉ । ତୁ ସେ ଗୋପାଛଡ଼ା
କଥାରୁ କଣ ପାଇବୁ ?···ଆମ ସେବା କଲେ ପୁଣି ମୁକ୍ତି
ମିଳିବ ! ହେଁ—

ଘିତା—ହଁ, କାହିଁକି ନ ମିଳିବ ? ତାଙ୍କ ବୋହୂକୁ ସେ ମୁକ୍ତି ଦବା
ପାଇଁ ଆଗୁରୁ ବାଟ ଠିକ୍ କରୁଥିବେ, କହୋ ରଘୁ-
ବୋଉ—ନୁହଁ ?



ରଘୁବୋଉ—ହଁ, ଏବ କାଳକୁ ତେମେମାନେ ନାଁ ଧରି ଡାକିବ
···ଶାସ୍ତ୍ର କହିଲେ ଗୋଡ଼ ଘଷିବ, ନଇଲେ ଉପରେ ମୁହଁ
କରି ଗୁଏଁ ଗୁଏଁ ଗୁଳିଯିବ···(ଠିକଏ ଦାନ୍ତ ନକୁଟି) ମୋ
ବୋହୂଟି ଘର ଭଲ ଘରେ · ତା'ର ସାନବଡ଼ ବରୁର ନାହିଁ
··ଏତେଡ଼ ବଡ଼ ଜମିଦାର ଘର ଝିଅ ହେଲେ କଣ ହେଲା···
ତାର ଗ୍ଲୋଟବଡ଼ ବଗୁର ନାଇଁ···ହେଇଥ ତେମେ
ଡାକଦେଲ ମତେ ରଘୁ-ବୋଉ···ଆଉ ସିଏ ?···ଯେତେଡ଼େ
ଟ୍ଲୋଠ୍ କୁଚିଆ ହାଡ଼ବାଉରି ଘର ହଉ ପଛେ ମୁହଁ ଉପରେ
କେବେହେଲେ ସେମିତି କହିବ ନାଇଁ···

ଘିତା—ମଲା ତମ ପୁଅ ମୋର ଦଅର ଲେଖା ହେବେ ବୋଲି
ନାଁ।ଠା ଧରି ଡାକି ଦେଲ ନା···

ଚନ୍ଦୁ ମା—ହଁ ସତେରେ···ଆମେ ଏଣିକି ତମକୁ ଆଉ
ରଘୁବୋଉ ବୋଲି ଡାକିବୁ ନାଇଁ···

ରଘୁବୋଉ—ଅଃ, ତେମେ ଡାକିଲ, ଆଉ ତମ ବୋହୂ ଡାକିଲେ
— ତଫାତ୍ ନାଇଁ ?

(ଏତିକି ବେଳେ ରଙ୍ଗଲତା ଆସିଲେ – ହିସାବରେ ଚନ୍ଦୁ ମାଙ୍କର ନଣନ୍ଦ ଲେଖା – ବୟସ ପଇଁତିରିଶ – ରଙ୍ଗ କଳା – ବେଶଭୂଷାରୁ ଜଣାପଡ଼େ ଗରିବ ଘର)

ରଙ୍ଗଲତା—ଆଲୋ ଦେଖ ଲୋ···ଶାଶୁ କେଡ଼େ ମଉଜରେ ଘଷା ଖାଉଚନ୍ତି ଗୋଡ଼ ଲମ୍ବେଇ ।

ଚନ୍ଦୁ ମା—(ବୋହୁର ହାତ ବାହାର କରିଦେଇ)-ନାଇଁ ବା, ଜୋର କଲାଣି ମୁଁ କହିଲି ହଉ ଘଷ୍···

ରଘୁବୋଉ—(ସୀତାକୁ ଲକ୍ଷ୍ୟକରି) ଘଷନା ତେମେ ଘଷ···ତାଙ୍କ କଥାରୁ ତେମେ କଣ ପାଇବ ? (ରଙ୍ଗଲତାକୁ ଲକ୍ଷ୍ୟକରି) ଅଇକୁଣିକା ତ ଆସି ହାତ ମାରୁଥିଲେ, ତେମେ ଆସି ଭଣ୍ଡୁର କରି ଦେଲ···ଠିକିଏ ଠିକଏ ଅଭ୍ୟାସ ନକଲେ –

ରଙ୍ଗଲତା—ମଲ,ମୁଁ କାହିଁକି ମନା କରିବ ?···ଘଷ ନାଇଁ, ଘଷ୍ ···(ଚଲେ ଗଡ଼ିଲେ)

ସୀତା—(ରଙ୍ଗଲତାଙ୍କୁ ଧରି) ଆସ ତମକୁ ଠିକିଏ ଘଷିଦିଏଁ···

ରଙ୍ଗଲତା—(ଖଟେଣ୍ଟି ଦୂରକୁ ଘୁଞ୍ଚି ଯାଇଁ) ଦେ ଉଠ୍‌ଲୋ ··ନିଜ ବୋହୁ ଗଲେ ପସର ଫାଟି, ପର ଆଇଲେ ବେସର ବାଟି ···ରଘୁ ବୋଉ ବଡୋଉ ଥାଉ, ତୁ ଘଷୁଥା । ଶାଶୁ ଶୋଇ ଥାଉ···ମୁଁ ଆଇଲି ପୋଇ ଉଙ୍କ ଦ'ଖଣ୍ଡି ନବାକୁ ଆଉ ଇଏ ଆଇଲା ମୋ ଗୋଡ଼ି ଘଷି ! (ଉଠି ଗୁଳିଗଲେ)

(ବଡ଼ପୁଅ ମୀନକେତନ କଂଚରି ପୋଷାକରେ ଘର ଭିତରକୁ ପଶିଲେ—ବୟସ ତିରିଶ ବତିଶ—ତାଙ୍କୁ ଦେଖି ରଘୁ-ବୋଉ ଠିକିଏ ଆଡ଼ ହେଇଗଲେ—ନତା ମା ଠିକିଏ ଆଡ଼େଇ

ହେଇ ଠିଆ ହେଲା ଓ ଗୀତା ପୁଣି ଚିନୁମାଙ୍କ ଗୋଡ଼ ଘଷିବାରେ ଲାଗି ପଡ଼ିଲା—)

ମୀନକେତନ—(ରାଗ ତମ ତମ ହୋଇ) କିଏ ସବୁ ମୋ କଚେରୀ କାଗଜପତ୍ର ଏପଟ ସେପଟ କରିଛି ? ଖୋଜିଲାବେଳକୁ କିଛି ମିଳୁନାହିଁ । (ଚିନୁମାଙ୍କୁ ଲକ୍ଷ୍ୟକରି) ତମକୁ ସବୁ କିଏ କହେ ମୋ ଘରେ ପଶି ଜିନିଷ ସଜାଡ଼ିବାକୁ ? ହେଇଟି, ଗାଉଁଲି କୋଉଠିକାର...ଏଗୁଡ଼ାଙ୍କ ଜ୍ୱାଳାରେ ମଣିଷ କିଛି କରିପାରିବ ନାହିଁ... ।

ଚିନୁ ମା—କାଲିଁ, କାଲିଁ, କଣ ହେଲା ? ମୁ କରିଚି...ଆଉ କଣ କଣ ସେମିତି ଧୂଳିମୂଳି ହେଇ ପଡ଼ିଥାନ୍ତା ? ମୋ ଆଖିରେ ଏମିତି ଅସନାମସନା ଯାଏ ନାହିଁ...(ଗୀତାକୁ ଲକ୍ଷ୍ୟ କରି) ହଇଲୋ, ତୁ ପରା କଣ ସଜାଡୁଥିଲୁ, କଣ ସେ ଖୋଜୁଛି ଠିକଏ ଯାଇଁ ଖୋଜି ଦେଇ ଆ ।

ମୀନକେତନ---(ସେମିତି ରାଗ ତମତମ ହୋଇ) ମୁଁ ଜାଣେ ପରା ଏ ଦି'ଜଣଙ୍କ ଭିତରୁ କିଏ କରିଥିବ ନିଶ୍ଚେଁ...କୋଉ କଚେରୀ କାଗଜ ଯାଇଁ ପଶିଛି ହିସାବ ଖାତା ଭିତରେ ତ କୋଉ କାଗଜ ଯାଇଁ ପଶିଚି ଆଉ କା ଭିତରେ...

ଗୀତା---(ନିରୀହଙ୍କ ପରି) ଉଁ, ମା କହିଲେ ଲକ୍ଷ୍ମୀ ଛୁଡ଼ିଯିବେ ବୋଲି...ମୁଁ ତ ସେତେବେଳେ ମନା କରୁଥିଲି ସେଥିରେ ହାତ ଦବାକୁ...

ମୀନକେତନ---(ଖଚେଇ ହେଲାପରି) ଲକ୍ଷ୍ମୀ ଛୁଡ଼ି ଯାଉଛନ୍ତି ! ଯାଉନ ତମ ଲକ୍ଷ୍ମୀକୁ ନେଇ କୋଥଳିରେ ପୂରେଇ ତାଲା ଦେଇ ସାଇତି ରଖିବ ? ମୋ କାଗଜପତ୍ର ଘାଣ୍ଟୁଛ କାହିଁକି ?

···ତମ ହାତ ବାଜଗଲେ ଲକ୍ଷ୍ମୀ ଖାଲି ଦ'ଗୋଡ଼ରେ ଧାଇଁ ଧାଇଁ ଆସିବେ ! ···(ବିରକ୍ତ ହୋଇ) ଧେତ୍ ମଣିଷ ଏ ଘରୁ ଆଉ କୋଉଠିକି ଚାଲିଗଲେ ଯାଆନ୍ତା (ବାହାରି ଗଲାବେଳେ ଘାତାକୁ ଡାକ ) ଶୁଣି ଯାଅ ଟିକେ···

ଚନ୍ଦୁ ମା—(ଉଠି ବସି) ଯାଉନୁ, ଯା ··ତୋ ଭଲଆ ପୁଅର ଯାହା ରୋଜଗାର ହବ ମୁଁ ବୁଝିପାରୁଛି – ହଇରେ, ମା'କୁ ପୁଣି ତୁ କହିବୁ ଗାଉଁଲି !···ତୁଇ ତ ଏକା ନଇଲେ ସହରିଆଣୀଟାଏ ବାହା ହୋଇଚୁ ? ଯା, ଘର୍··ହେଁ···'ଜାଲ ନାହିଁ ଜାଲି ବାକୁ,ଚୁଲିମୁଣ୍ଡଠେଇଁ ସକେଇ କାନ୍ଦେ ଭନେ ଘର କରି ବାକୁ !'·· ଇଏ ପୁଣି ଆସିଲା ମତେ ଡରେଇବାକୁ···

ରଘୁବୋଉ—(ସଳଖି ବସି) ଛୁଆ··କୋଉ ଜନମ କଲା ମା ଏତକ ଧିଅ ଧରି ସହିବ ଭଲା ?···ଯାହା କୁହ ମୋ ପୁଅଟିମାନେ ଏମେଞ୍ଚ ନୁହନ୍ତି ··ବୋହୂଟା ହୋଇକରି ଶାଶୁପଟ ନେଇ ଦ'ପଦ କହିଲା ନାହିଁ ଯେ ଖାଲି କହୁଚନ୍ତି କଣ ନା ଶାଶୁ ଏ ବଖତ୍ କାଢ଼ିଚନ୍ତି ··କୋଉକଥା ଶୁଣିବ ଭଲା ?···ଆଲୋ, ଯାହା କହନ୍ତି – 'ମଉନମୁହାଁଟି କହୁଛି ନ ଜାଣେ, ବେଳକାଳ ଦେଖି ପଦଏ ହାଣେ'···ଏମିତି ଟିହାଇ ଦେଲେ ପୁଅ ମନ ଆଉ ମା ଠେଇଁ ରହିବ ?···(ଚନ୍ଦୁମାଙ୍କୁ କାନ୍ଦୁଥିବାର ଦେଖି) କଣ ଆଉ ଧରୁଚ ଚନ୍ଦୁ ମା ··ପାଗେଲା ପୁଅ···ଯାହା ତୁଣ୍ଡକୁ ଆସିଲା କହି ଦେଇଗଲା···

ଚନ୍ଦୁମା—(ଆଖିରୁ ଲୁହ ପୋଛି) ହଁ, କଏ କେତେ କଥା କହି ଯାଉଚ – ମୋ ଦେହ ବୋଲି ସହି ଯାଉଚ··କାନରେ ନାକ ପୋଛି) ନାଇଁ ମ, ମୋ ପୁଅ ଏମିତି ନ ଥିଲା । କାଇଁକି କେଜାଣି, ବାହାହେଲା ଦିନରୁ ତ ଗଲା ଏମିତି ହଉଚ ।

ରଘୁବୋଉ—(ଆଖି ଡୋଳା ନଚେଇ) ହାଁ, ସେଇକଥା ଆଗରୁ କହୁନା···ବୋହୂ ଗୃହ ମୋଡ଼ଚ ଗୋ ତମ ବୋହୂ ଗୃହ ମୋଡ଼ଚ···ସେଇଥିପେଇଁ ପୁଅ ତମର ଧେଇ ଧେଇ ହୋଇ ନାଚୁଛି । (ଫୁସ୍ ଫୁସ୍ କରି) ବୋହୂକୁ ବାଗକୁ ଆଣ, ଦେଖିବ ପୁଅ ବଳେ ବଳେ ବାଗକୁ ଆସିବ···ଆଉ ନଇଲେ ! ଏକ ଅଭିଆଣ କଥା ! ମା ଗାଉଁଲି ବୋଲି ପୁଅ ଭୁନେ ଘର ଜରବ ?

ନଟା ମା—ସାଆନ୍ତାଣୀ, ଆପଣ ଶୋଇ ଯାଆନ୍ତୁ ନଇଲେ ଧିଅକୁ ବାଧିବ···ଦେଖା, ମୁଁ ଆଉ ଦ'ମୋଡ଼ା ଦଏଁ···

ଚନୁ ମା—ନାଇଁଲୋ, ତୁ ଯା···କାଲି ଆସିବୁ···

ନଟା ମା—(ମୁହଁ ଶୁଖେଇ) ଖାଇବାକୁ ଘରେ କିଛି ନାଇଁ ସାଆନ୍ତାଣୀ···

ଚନୁ ମା—ହଉ ଯା, ପୁଖାଏଁକି କହି ଚାଉଳ ନେଇଯିବୁ (ନଟା ମା ଚାଲିଯିବା)

ରଘୁବୋଉ—(ଶୁଣେଇ ଶୁଣେଇ) ଖାଇଥା ଲୋ, ଖାଇଥା···ଏ ସାଆନ୍ତାଣୀଙ୍କ ଅମଳରେ ଯାହା ଖାଇବାର ଖାଇଥା···ଭୁଲ୍ଲିକୁ ଆଉ ନପାଇବୁ ପଛକୁ···(ଚନୁମାଙ୍କୁ ଚାହିଁ) ମୁଁ ଯାଉଛି ଗୋ···କେତେବେଳ ହେଇଗଲାଣି (ଯାଉ ଯାଉ ହଠାତ୍ ଫେରି ପଡ଼ି) ହଁ, ହଁ, ଚନୁମା—କଥାଏ କହିବାକୁ ଭୁଲି ଯାଇଥିଲି···ବାବୁ କହିଚନ୍ତି (ଠିକିଏ ନେହୁରା ହେଲା ପରି) ଏଇ ଟଙ୍କା ତିରିଶିଟା ଦେଇଥବ···ମୁଁ ଆରମାସକୁ ଦେଇଦେବ ଯେ···ମୁଁ ତାଙ୍କୁ କହିଲି—ଆମ ଚନୁମାଙ୍କୁ

ମାଗିଲେ ସେ ଫେରେଇ ଦେବେ ନାଇଁ – ସେଇ ଏକା ଆମ ବିପଦ ଆପଦକୁ ସାହା···ତାଙ୍କ ପାଖକୁ ବେଳ ଅବେଳରେ ଯିବା ନାଇଁ ତ ଆଉ କାହା ପାଖକୁ ଯିବା !

ଚନୁ ମା—(ବାକ୍ସ ଫିଟେଇ ଟଙ୍କା ଦେଇ) ହଉ, ନେଇ ଥା ·· ଦେଖ ରଘୁ ବୋଉ, ତର ତର ହେବ ନାହିଁ···ଟଙ୍କା କଣ କୁଆଡ଼େ ବୁଡ଼ ଯାଉଚି ?···ଆର ମାସରେ ନ ହେଲେ ତେଇଁ ଆର ମାସରେ ଦବ···

(ରଘୁ ବୋଉ ଖୁବ୍ କୃତାର୍ଥ ହେଲା ପରି ହାତରେ ଟଙ୍କା ଧରି ଚାଲିଯିବା ଓ ଚନୁମା ଅନ୍ୟମନସ୍କ ହେଇ ଭାବୁ ଭାବୁ)

—ପରଦା—

## ଚତୁର୍ଥ ଦୃଶ୍ୟ

ଚାରିବର୍ଷ ପରେ—

(ପୂର୍ବ ପରିଚିତ ସେହି ଦୋତାଲା କୋଠା – ଗୋଟିଏ ବଖରାରେ ଚନୁମା ଗାଲରେ ହାତ ଦେଇ ବସିଛନ୍ତି – ବିଧବା ବେଶ – ପାଖରେ ଗୋଟିଏ ଅଡ଼େଇ ବର୍ଷର ଝିଅ ବସି ଅଳିଆ ଘାଣ୍ଟୁଛି—)

ସମୟ ଦିନ ଦଶଟା –

(ଗୀତା ହଠାତ୍ ଘର ଭିତରକୁ ପଶି ଆସିଲା – ମୁଣ୍ଡରୁ ଲୁଗା ଖସି ଯାଇଛି)

ଘାତା—ଇସ୍…ଏ କଣ ହେଉଚ ! (ପିଲାକୁ ଗୃହିଁ) ମା, ତମେ ଭୁଗ୍ଣଟାରେ ଏଇଠି ବସିଚ—ପିଲାଟାକୁ ଟିକେ ନଜର ରଖୁନା ? ଯାହା ତା' ଖାଇ ଗୃଲଚ (ପିଲାକୁ ଚଟକଣା ମାରି) ଏଇଟା ପାଇଁ ଆଉ ମୁଁ ଏତେ ଟଙ୍କା ଖର୍ଚ୍ଚ କରି ପାରିବ ନାହିଁ ।

ଚନୁ ମା—(ଟିକଏ ଶଙ୍କି ଯାଇ) ନାଇଁ ବୋହୁ, ପିଲାଟା ଏଇକ୍ଷଣା ସେଠିକି ଯାଇଚ ··ମୁଁ ପରା ତାକୁ କାଖେଇଥିଲି ।

ଘାତା—(ମୁହଁ ଫଣ ଫଣ କରି) ହୁଁ, କାହାର କଣ କ୍ଷତି ହେଇ ଯାଉଚ କି ? ··ଭୋଗିବା ଲୋକ ଭୋଗିବ···(ପିଲାର ଗାଲ ଚୋଡ଼ି ଦେଇ) ବଦମାସ୍ ଟୋକା···ଆଉ ଖାଇବୁ ?···

ଚନୁ ମା—(ଉଠିଯାଇ ପିଲାକୁ ଆଉଁସିଦେଇ) ଆହା, ଅଜ୍ଞାନ ବାଳୁତ —କଣ ସିଏ ବୁଝୁଚି ? କୃଷ୍ଣ ତ ନିଜେ ଭଗବାନ ହେଇ ମାଟି ଖାଇଥିଲେ···

ଘାତା—ହଁ, ସେଇ ଗେହ୍ଲା କଥା କହି କହି ତ ତା'ର ସବୁ ବଦଗୁଣ ବାହାର କଲଣି । ଆହୁରି···ଏଇଥି ପାଇଁ ମୁଁ ସ୍ବାଙ୍କୁ ସବୁବେଳେ କହେ ଟୁଟୁଲି ପାଇଁ ଗୋଟିଏ ଆୟା ରଖିବାକୁ···(ଯିବାକୁ ଉଦ୍ୟତ ହେବା)

(ହଠାତ୍ ମୀନକେତନ ପଶି ଆସିବା ଓ ଘାତା ଅଟକି ଯିବା)

ମୀନ—(ଚଡ଼ିଲା ମୁହଁରେ) କଣ ହେଲା ? କାଇଁକି ଏମିତି ପାଟି ହଉଚ ? ଘରେ କେତେବେଳେ ଆଉ ଶାନ୍ତ ରହିଲା ନାହିଁ ଦେଖୁଚି ! ଯେତେବେଳେ—

ଚନୁ ମା—(କାନ୍ଦ କାନ୍ଦ ହୋଇ) ନାଇଁରେ ପୁଅ, ଟୁଟୁଲିକୁ ମୁଁ ଆଉ ଧରିବି ନାଇଁ ମୁଁ କଣ ଜାଣି ଜାଣି ତାକୁ ସବୁ

ବଦଗୁଣ ଶିଖଉଚ ? ମୁଁ ତ ପୁଣି ନିଜେ ଛ ଛ'ଟା ପିଲା ବଢ଼େଇଥିଲି । ଦଇବ ସିନା ସହିଲା ନାହିଁ ବୋଲି···ତୋ ଝିଅ ବୋଲି କଣ ଆଉ ମୁଁ ଅହଙ୍କାରେ — (କାନ୍ଦିବା)

ଶାନ୍ତା — (ଠିଆ ହୋଇ) ମୁଁ କଣ କହିଲି ତମେ ଅହଙ୍କାରେ କରୁଚ ବୋଲି ? ତମର ଏ ବଦଗୁଣ ମତେ ବଡ଼ ବିରକ୍ତ ଲାଗେ । ସବୁବେଳେ ସେହି ବାଦ ହିଂସା କଥା ପାଟିରେ ତମର ବସା ବାନ୍ଧିଛି ।

ମୀନ — ହୋ, ମା, ତୁ ଏତିକ ଟିକିଏ ଟିକିଏ କଥାକୁ କ'ଣ ଧରୁଚୁ ମ ? ମାଆର ମନ ସହି ପାରିଲା ନାହିଁ ବୋଲି କଣ ପଦେ କହିଦେଲା । ଏଥିରେ ତୁ —

ଶନୁ ମା — (ଲୁହ ପୋଛୁ ପୋଛୁ, ବାଧା ଦେଇ) ନାଇଁରେ ଧୁଅ ମୋର ଆଉ କଣ ଅଛି ? ମୁଣ୍ଡର ମଣିକୁ ତ ହରେଇ ବସିଲି ···ସିଏ ଥିଲେ କଣ ମତେ ଏତେ କଥା କେହି କହନ୍ତେ ନା ମୁଁ ଏତେ କଥା କାହାର ସହନ୍ତି ? ଆଜି ମୋର ଏ ଦଶା ହେଲା ବୋଲି କଣ ସବୁ ମୁହଁ ପୋତି ସହିଯିବ ?

ଶାନ୍ତା — (କଥା ମାଡ଼ ବସି) ହଁ, ତମକୁ ତ ଖାଲି କଏ କେତେ କଥା କହି ଯାଉଛନ୍ତି ଆଉ ତେମେ ଖାଲି ସହି ଯାଉଚ ! (ମୁହଁ ମୋଡ଼ି) ସମସ୍ତଙ୍କୁ ଏମିତି ସେକେଇ ଆସେ···

ମୀନ — (ଆଦେଶ କଣ୍ଠରେ) ଶାନ୍ତା !!

ଶାନ୍ତା — (ଲେଉଟି ଚାହିଁ) କଣ ?? ମତେ ଏତେ ଚୁଗୁଲିଆ କଥା ଶୁଣିବାକୁ ଭଲ ଲାଗେ ନାହିଁ ।

ମୀନ — ଏ ସବୁ କଣ ହେଉଚ ? କାହିଁକି ଆଉ ପାଠ ପଢ଼ିଥିଲ ? ଜଣକ ସାଙ୍ଗେ ତ ମିଳିମିଶି ଚଳି ପାରୁ ନ ?

ସୀତା—(ସେହିପରି ଦୃଢ଼ ସ୍ୱରରେ) ମତେ ଏମିତି ଲୋକଙ୍କ ସାଙ୍ଗରେ ମିଳାମିଶା ଚଳି ଆସେ ନାହିଁ···ମୋ ମନ ଫାଟି ଯାଇଛି—ଆଜି କଣ ନୂଆ କରି ଦେଖୁଛ ? ଫଟା ମନକୁ ଯେତେ ଯୋଡ଼ିଲେ ଆଉ ସେ ଯୋଡ଼ିହୁଏ ନାହିଁ ।

(ରଘୁବୋଉଙ୍କର ପ୍ରବେଶ—କାଖରେ ଗୋଟିଏ ପିଲା—ତାଙ୍କୁ ଦେଖି ମାନକେତନ ସୀତାକୁ ଡାକି ନେଇ ବାହାରି ଯିବା )

ରଘୁବୋଉ—(ଥରେ ଘୃଣା ଆଡ଼କୁ ଗୃହିଁ ଦେଇ) କାହାରି ଫଟା ମନ ଯୋଡ଼ି ହେଇ ପାରୁ ନାଇଁ ଗୋ ! (ଚିନୁମାଙ୍କୁ କାନ୍ଦୁଥିବାର ଦେଖି, ଚୁ ଚୁ ମାରି) ହେ ହୋ···କେତେବେଳେ ହେଇ ତ' ଆଖି ଆଉ ତମର ଶୁଖିଲା ରହିଲା ନାଇଁ ? ଦଇବ ପୁଅ ଦେଇ କରି ପୁଣି ଏତେ ଅନଭୋଗ କପାଳରେ ଲେଖିଥିଲା ? ତେବେ ଆଉ କଣ କରିବ ଚିନୁ ମା ! ଇଏତ କପାଳ ଲିଖନ —କଣ କା' ହାତର କଥା ହେଇଚି ! ତମ କଥାପରା ମୋ ମନେ ପଡ଼ିଗଲେ ଛାତି ଖାଲି କରତି ହେଇଯାଏ—ଅଃ··କି ମଣିଷ, କେତେ ସରହେଲା—ମରିଯିବା ହେଲେ ଇଆଠୁ ଭଲ—

ଚିନୁ ମା—(ଆଖିରୁ ଲୁହ ପୋଛି) ମୋ କପାଳରେ ଯେତେ ହୀନସ୍ତା ଅଛି ମତେ ମରଣ ଆସିବ କୁଆଡୁ ? ମୁଣ୍ଡର ସିନ୍ଦୁର, ହାତର କାଚ ହରେଇ ଆଉ ବଞ୍ଚି ରହିବାଟା ଭଲ ନୁହେଁ, ରଘୁବୋଉ । ଖାଲି ଦୁଃଖ ପାଇବା ସାର ହୁଏ—

ରଘୁବୋଉ—ମଲା, ତମର କି ଦୁଃଖ ବା ? ପୁଅବୋହୂ, ଝିଅଜେଇଁ, ନାତିନାତୁଣୀ—ସଭିଙ୍କ ମଝିରେ ଥାଇ ତମର ସୁଖରେ ଆଖି ବୁଜିବା କଥା · ଖାଲି ସେଇ ବୋହୂଟା ତମର

—(ସତର୍କ ଦୃଷ୍ଟିରେ ଘୃରଆଡ଼କୁ ଟିକଏ ଗୃହିଁଦେଇ) ତାକୁ ବ ଭଗବାନେ ସେମ୍‌ତେ ଲେଉଟ ଦଣ୍ଡ ଦେବେ ଯେ ! ତେମେ ଖବୁଚ କାଇଁକି ? ଟେକାଟିଏ ଯିଏ ଫିଙ୍ଗିଥାଏ, ତା ଚେଇଁ ପଥରଟିଏ ଥୁଆ ହେଇଥାଏ । (ଟିକିଏ ରହିଯାଇ) ଆଇଲ୍‌ବେଳେ କି କଥା ପଡ଼ୁଥିଲ୍ କ ?

ଚନ୍ଦୁ ମା—କହୁଥିଲେ, ପିଲ୍ ପାଇଁ ଆୟା ରଖିବେ । ମୁଁ ପୁଣି ତାଙ୍କ ପିଲ୍‌କୁ ବଦଗୁଣ ଶିଖଉଛୁ !

ରଘୁବୋଉ—ଆଁ !···ହଁ, କଇବେ ନାଇଁ କାଇଁକି ? ତମ ଦୁଦକରେ ତେମେ ପିଲ୍ ବଢ଼େଇଥିଲ ? ସେଇ ଯିନା ଏବେ ପର୍‌ଥମ୍ କର କରୁଚନ୍ତି !

ଚନ୍ଦୁ ମା—ମୁଁ ଆଉ କଣ କରିବି ! ବୁଆଟାଏ ·· ତା'ର ଆଖି ଆଗୁଟାରେ ଆମେ ଖାଉଥିବୁ—ଆଉ ସିଏ ଆମ ଆଖି ଆଗୁଟାରେ ମୁହଁକୁ ଗୃହିଁ ଉହଳ ବକଲ ହଉଥିବ— ଏଗୁଡ଼ାକ କେମିତି ମୋ ଦୁଦ ସହିବ, କହିଲ ଭଲ ? ଟିକଏ ତା ପାଟିକି ବଢ଼େଇ ଦେଲେ କଥା ସରି ଗଲ୍—ମାସେ ଯାକେ ଝାଡ଼ା ହେଲେ କଉଥିବେ ସେଇ କଣ ଖୁଆଇ ଦେଇ ଥିବେ ନା' ।

ରଘୁବୋଉ—(ଟିକଏ କାବା ହେଇଯିବା ପରି ଭାବ ଦେଖେଇ) ପୁଅ କହେ ?

ଚନ୍ଦୁ ମା—ପୁଅ ହଉ କି ବୋହୂ ହଉ—ଏକା କଥା···ଆଗେ ତ ପୁଅ ଆଖିରେ ଏ ସବୁ କିଛି ଦିଶୁ ନ ଥିଲ୍···କାଇଁ, ଦନେ ହେଲେ ତ ସିଏ ଘରକରଣା କଥାରେ ମୁଣ୍ଡ ପୂରେଇ ନ

ଥିଲା ? — ଆଉ ଏବେ କେମିତି ଠିକି ନଥି ସବୁ ଖବର ପାଉଚ ?

ରଘୁବୋଉ — ସତେ ?

ଚିନୁ ମା — ନାଇଁ' ପୁଅ ମତେ କିଛି କହେ ନାଇଁ — ହେଲେ ତା ମରମ କ'ଣ ମୁଁ ବୁଝୁ ନାଇଁ ?

ରଘୁବୋଉ — ଇଲୋ ମା,ସେ ଯୋଉ ରାହାବାଳୀ ଖଣ୍ଡେ,ପୁଅ ତମର ପଟ ନେଲେ ସେ ତାକୁ ଆଉ ଜଳ ପାତାଳରେ ଠାବ ହବ ? (ଦୀର୍ଘ ନିଃଶ୍ୱାସ ଗ୍ରହଣ) ସତରେ ଚିନୁ ମା, ଏ ଘରର ଶିରୀ ତୁଟି ଗଲାଣି···ଲକ୍ଷ୍ମୀ ଆଉ ବେଶି ଦିନ ରହିବେ ନାଇଁ — ତମ ଗଲା ବାର୍ଷି (ତାଳମାର ଦବା) ତା କଥାଗୁଡ଼ାକ ମନେ ପଡ଼ିଲେ ମୋ ଦିହରେ ପରା ଖାଲି ବିଷ ଚରି ଯାଉଚ ।

ଚିନୁ ମା — ମୋର ଆଉ ଏ ଘରେ ମନ ଲାଗୁ ନାଇଁ — ଭାବୁଚି କୁଆଡ଼େ ହେଲେ ଚାଲିଯିବି···

ରଘୁବୋଉ — ଆମ ଭିତରେ ସୁଲେଇ ବୋଉ ଜାଣି ବୋହୁଟିଏ କରିଚ । ସେଇ ବୋହୁଟିକି ଦେଖିଲେ ମତେ ଭାରି ଖୁସି ଲାଗେ; ସତେ ମ !···ଗୋଟି ଗୋଟି ପାଦଟିମାନ ପକେଇ ଶାଶୁପାଖରେ ସେ କେଡ଼େ ସୁନ୍ଦର ଆଚପାଚ ହଉଥାଏ ।

ଚିନୁ ମା — ହଁ, ଭଗବାନ ତାକୁ ସୁଖରେ ରଖନ୍ତୁ···ଆମକୁ ଯାହା ମିଳିନାଇଁ, ସେଥିପାଇଁ ହାଇଁପାଇଁ ହେଲେ କଣ ହବ ।

(ଚିନୁ ମା ଅନ୍ୟମନସ୍କ ହୋଇ ପଡ଼ିଲେ ଓ ରଘୁବୋଉ ତାଙ୍କ ମୁହଁକୁ ଚାହିଁ ରହିଥିବା ବେଳେ)

ପରଦା

## ପଞ୍ଚମ ଦୃଶ୍ୟ

ସେଇଦିନ ରାତି—

(ଉପର ମହଲରେ ସୀତା ବଖରା—ମୀନକେତନ ଘରେ ବୁଲୁଛି—ସୀତା ଗୋଟିଏ ଚୌକିରେ ଭରାଦେଇ ବସିଛି—ଦୁହେଁ ଗମ୍ଭୀର)

ମୀନ—(ବୁଲୁ ବୁଲୁ ହଠାତ୍ ଠିଆ ହୋଇ ଯାଇ) ତମେ ହେଲ ବୋହୂ—ଘରର ଶାନ୍ତି ଅଶାନ୍ତି ତମରି ଉପରେ ନିର୍ଭର କରୁଛି ।

ସୀତା—(ଉତ୍ତେଜିତ ହୋଇ) ନା, ସେ ଖାଲି ମନଇଚ୍ଛା କହି ଯାଉଥିବେ—ଆଉ ମୁଁ ମୁଣ୍ଡପୋତି ସହି ଯାଉଥିବି—କାହିଁକି ? ବାପା ଥିବାଯାକେ ବହୁତ ସହିଛି—ଆଉ ଏଣିକି ମୁଁ—

ମୀନ—(କଥାରେ ବାଧାଦେଇ) ସୀତା ! ପୁଣି ତମର ସେହି କଥା ? ଯେତେହେଲେ ସେ ମୋର ମା । ଛିଃ—ତମ କଥା ଶୁଣିବାକୁ—

ସୀତା—(ଧଡ଼୍ କରି ଉଠିପଡ଼ି) ବେଶ୍ ଭଲ ହେଲା—ତମେ ମା ପୁଅ ଦିହେଁ ସୁଖରେ ରହ—ମୋ କଥା କାହିଁକି କାହାକୁ ଖରାପ ଲାଗିବାକୁ ଯିବ ? ମୁଁ ମୋ ବାପ ଘରକୁ ଚାଲି ଯାଉଛି··· ତମ ମା'ଙ୍କୁ କହ, ଆଉ ଥରେ ବାହା କରିଦେବେ—ସମସ୍ତେ ମିଶି ବେଶ୍ ଆରାମରେ ରହିବ । (ଯିବାକୁ ଉଦ୍ୟତ ହେବା)

ମୀନ—(ବାଧା ଦେବାକୁ ଯାଇ) ଶୁଣ,···(ମୁହିଁକୁ ଚାହିଁ) ଏଥିରେ କାନ୍ଦିବାର କଣ ଅଛି ? ତମେ ଏତେ ପଢ଼ି ଯଦି ଏମିତି

ଅବୁଝା ହୁଅ···ମା' ତ ସହଜେ ଅବୁଝା···ତମେ ନିଜେ କହୁନା···ସେ ଯେ ସବୁବେଳେ ଏମିତି କାନ୍ଦୁଛ, ସେଇଟା କଣ ଭଲ ହଉଛ ? ତାକୁ ଟିକିଏ ସନ୍ତୁଷ୍ଟ—

ଗୀତା—(ଉଠିବାକୁ ଚେଷ୍ଟା କରି) ଯେ କେବେ ହେଲେ ମୋ ପ୍ରତି ସନ୍ତୁଷ୍ଟ ନୁହନ୍ତି, ତାଙ୍କୁ ମୁଁ କେମିତି ସନ୍ତୁଷ୍ଟ କରେଇବ ?··· ସେଇ ରଘୁବୋଉ, ସୁଲେଇ ବୋଉ—ହେଉଁକା ସବୁବେଳେ ଆସି ମୋ'ର ଚର୍ଚ୍ଚା କେରେଇବେ—ଆଉ ତମ ମା ସେଠି ବସି ସେଥିରେ ପାନିଆ ଦଉଥିବେ···ସମସ୍ତଙ୍କ ବୋହୂ ଭଲ ପଡ଼ିଲା, ଖାଲି ତାଙ୍କର ବୋହୂଟା ବେଳକୁ 'ପୋଡ଼ା କପାଳ' ପଡ଼ିଲା ।

ମୀନ—ଆଃ – ବାହାର ଲୋକ କିଏ କଣ କହିଲେ---ତାକୁ ଯଦି ଏମିତି ତମେ ଧରି ବସ---(ସାମନା ଚୌକିରେ ବସିବା)

ଗୀତା---କାହାରି କଥା ତ ଧରିବ ନାହିଁ ! ଶାଶୁଙ୍କ କଥାକୁ ଧରିବ ନାହିଁ---କାହିଁକି ନା ସେ ଜଲଦି ମରିଯିବେ, ନଣନ୍ଦ କଥା ଧରିବ ନାହିଁ, ସେ ମୋଠୁ ବଡ଼—ସାଇପଡ଼ିଶାଙ୍କ କଥାକୁ ଧରିବ ନାହିଁ କାହିଁକି ନା ତାଙ୍କ ପାଟିରେ ବାଡ଼ବତା ଦେଇ ହେବ ନାହିଁ—ଆଉ ମୁହିଁ ଏକା ଆସିଛି ଏ ଘରକୁ ଚାକରାଣୀ ହେଇ---ଖାଲି ସମସ୍ତଙ୍କ କଥା ସହିବାକୁ---(ଆଖିରେ ଲୁଗା ଦେଇ କାନ୍ଦିବା)

ମୀନ—(ବୁଝେଇବାକୁ ଚେଷ୍ଟାକରି) ଆଚ୍ଛା, ମୁଁ ମା'କୁ କହିଦେବ ସେମାନଙ୍କୁ ଆସିବାକୁ ମନା କରିଦେବ—

ଗୀତା—(ଆଖିରୁ ଲୁଗା କାଢ଼ି) ହଁ, ତମେ କହିଦେଲେ ଖାଲି ହେଇଯିବ ! ସେଦିନ ମୋର ଆଗୁଟାରେ ବସି ରଘୁବୋଉ କହୁଥାଏ---"ବୋହୂ ! ଶାଶୁଙ୍କ ଆଖିରୁ ଟୋପେ ଲୁହ ଗଡ଼ିଲେ

ସେଇ ପୁଣି ପଛରେ ତମର ଉପରେ ଆସି ପଡ଼ିବ...ସିଏ ଏବେ ତାଙ୍କ ସ୍ୱାମୀଙ୍କ କଥା ମନେ ପକେଇ କାନ୍ଦିବେ— ସେଥିପାଇଁ ଦୋଷୀ ହେବି ମୁଁ ?

ମୀନ---କହିଲେ କଣ ହେଇ ଯାଉଚି ?

ଗୀତା---(ରାଗରେ ତମତମ ହୋଇ) କାଇଁକି ନା ! ଏ କଥା କହିବାକୁ ରଘୁବୋଉ କିଏସ୍ ? ମା ପୁଣି କହୁଛନ୍ତି କଣ ନା (ଖତେଇ ହେଇ) ବୋହୂ, ରଘୁବୋଉଙ୍କୁ ଦି ଖଣ୍ଡ ପାନ ଭାଙ୍ଗି ଦିଅ ।

ମୀନ---(କଣ ଭାବିଲା ପରି) ହୁଁ ।

ଗୀତା — ତମ ମାଙ୍କୁ ଖୋଲିକରି କହିଦିଅ — ସେ ଯଦି ଆମ ସାଙ୍ଗରେ ମିଶି ଚଳିବାକୁ ଚାହାନ୍ତି ତେବେ ସାଇପଡ଼ିଶାଙ୍କୁ ଛାଡ଼ନ୍ତୁ ।

(ମୀନକେତନ ସେହିପରି ଗମ୍ଭୀର ହୋଇ ବସି ରହିଲା ଓ ଗୀତା ଥରେ ତା ଆଡ଼କୁ ଚାହିଁ ଖଣ୍ଡେ ଖବର କାଗଜ ଉଠେଇ ଧରିଲା)

ପରଦା

## ଷଷ୍ଠ ଦୃଶ୍ୟ

କିଛିଦିନ ପରେ—

[ସଂଧ୍ୟାବେଳ—ସେହି ଘର—ଚିନୁମା ବାକ୍ସ ସଜାଡ଼ୁଛନ୍ତି ଓ ପାଖରେ ବସି ଚିନୁ ହାତକୁ ଜିନିଷ ବଢ଼େଇ ଦଉଚି—ବସ୍ତୁ ପଇଁତିରିଶ—ଦେଖିବାକୁ ବେଶ୍ ସୁନ୍ଦର—ଟିକିଏ ଦୂରରେ ବସିଛନ୍ତି ବମ୍ ]

ବମ୍ମା—ଚନ୍ନୁ ତୁ ଆସିଲୁ ଭଲ କଲୁ, ମୁଁ ପରା ସେଇଆ ମନେ ମନେ କେତେ ବନ୍ଦୁ ଭାବୁଲଣି—ଅପାଙ୍କୁ ତୋ ପାଖକୁ ନେଇଯା—ତାଙ୍କ ମନଟା ଭୁଲିଯିବ···ଏଠି ତାଙ୍କ ଅବସ୍ଥା ଯାହା ହେଲାଣି ···ସବୁବେଳେ କେଁ କଟର ଲଗିଲେ ହବ ନାହିଁ ?

ଚନ୍ନୁ—ହଁ, ମୁଁ ବ ଆଗରୁ ସେଇ କଥା ଭାବୁଥିଲି – ଖାଲି ମା ରାଜି ହବ ନାହିଁ ବୋଲି—

ଚନ୍ନୁ ମା—(କଥାରେ ବାଧାଦେଇ) ଆଗରୁ ଚାଲି ଯାଇଥିଲେ ଭଲ ହୋଇଥାନ୍ତା···ଏଠି ରହି ମୋ ମାନ ମହତ ସବୁ ସାରିଲ··· ସେଇ ପୁଅ ଆସି ପୁଣି କଣ କଉଚ ନା, ମା, ତୁ ଅନ୍ୟ କଥାରେ ପଡ଼ ବୋହୂ ଉପରେ ରାଗୁଚୁ—ମୁଁ ପୁଣି ବୋହୂ ସାଥିରେ ଚଳିବାକୁ ହେଲେ ମୋ ସାଙ୍ଗସାଥିଙ୍କୁ ଏଠି ପୂରେଇବ ନାହିଁ ···

ବମ୍ମା—(ହସି) ମା'ଲୋ, ମୁଁ ଆଜି ଆସିଚ ଜାଣିଲେ ତମ ବୋହୂ ତେବେ ତମ ଉପରେ ଗୁଞ୍ଜୁଣି ଉଠେଇବେ ତ ? ମୁଁ କେମିତି ପଳାଏ ଲୋ ମା···(ଉଠିବାକୁ ବାହାରିବା)

ଚନ୍ନୁ—ମଲା, ରହମ ମାଉସୀ, ଖଣ୍ଡେ ପାନ ନେଇ ଯା ହେଲେ—(କହି ପାନ ଭାଙ୍ଗିବାକୁ ବସିବା)

ଚନ୍ନୁ ମା—(ପାନବଟାକୁ ଖୋଜି) ଆଲୋ ଚନ୍ନୁ, ସେ ପାନବଟା କଣ ଆଉ ଏଠି ଅଛି କି ? ମୀନର ଖାଇବାକୁ ଅସୁବିଧା ହେଲା ବୋଲି ପରା ବୋହୂ ତାକୁ ନେଇ ଯାଇଚି ।

ବମ୍ମା – ମୀନର କାହିଁକି ଅସୁବିଧା ହେବ ମ ! ଅସଲ କଥା ହେଲା; ସାଇପଡ଼ଶା ଖାଇ ଯାଉଚନ୍ତି···ଭଲ କରିଚ, ତମେ ଅଲଗା ବଟା କରିଚ···

ଚିନୁ—( ପାନ ଘଙ୍ଗୁଘଙ୍ଗୁ ) ଏଗୁଡ଼ାକ ନହାତ୍ତି ଶ୍ରେଷ୍ଠ କଥା···

ଚିନୁ ମା---( ବାଧାଦେଇ ) ଖାଲି କଣ ସେତିକ ଲୋ ଝିଅ ? ମୋର ଆଗୁଁଠାରେ ସେଦିନ ରଘୁବୋଉ କଣ ଠିକଏ ତାକୁ କହି ଦେଲା ଯେ, ବୋହୂ ଆମର ରଘୁବୋଉକୁ କହିଲେ "ତେମେ କାଇଁକି ଏଠି ଏତେ ମୁରବପଣିଆ ଦେଖାଉଚ ? ଯାଉନ ତମ ବୋହୂ ପାଖରେ ଦେଖେଇବ"···ଆଚ୍ଛା କହିଲୁ, ଏଗୁଡ଼ାକ ମୋ ଦିହ ସହିବ ? ସେଥିରେ ପୁଣି ଦୋଷ ହେଲା ମୋର ।

ଚନୁ—(ମୁହଁ ଗମ୍ଭୀର କରି) ମୀନର ସେଇଠା ବୁଝିବା ଭୁଲ— ସବୁବେଳେ ତାକୁ ମୁଣ୍ଡରେ ବସେଇ ବସେଇ ତା ମୁହଁ ଉପରକୁ କରି ଦେଲଣି ।

ବମା—(ଖୁସି ହୋଇ) ଇଲୋ, ତୁ ଆଉ କାଇଁକି ପୁଣି ପାଟି ଫିଟେଉଚୁ ? ସିଏ ଅଫାଙ୍କ ପଠ ନେଇ ଫନ୍ଦ କହିବ, ତାକୁ ସିଏ ଘର ବାସନ୍ଦ କରି ଦଉଚ ପରା ! (ଦୃଷ୍ଟି ଆଡ଼କୁ ଗୁହଁ ଦେଇ ) ସିଏ ଆସିବା ଆଗରୁ ମୁଁ କମିତି ଚଳାଏ ଲୋ ମା···

(ଘୂଲେଈବୋଉଙ୍କର ପ୍ରବେଶ)

ଘୂଲେଈବୋଉ—(ଚନୁକୁ ଦେଖି), ଆଲୋ ଚନୁ ନା କଣ !! କେବେ ଆଇଲୁବା ?

ଚିନୁ—କାଲି ଆସିଲି ପରା !

ବମା—ତେମେ ବସ, ମୁଁ ଏଥର ଯାଉଚ ।

ସୁଲେଖଣିବୋଉ---କାହିଁକି ବା ଏତେ ତରବର ? ଆଉ ଟିକଏ ବସୁନ !

ବମା---(ଚନୁମାଙ୍କୁ ଚାହିଁ) ହଉ ତେବେ ଆଉ ଟିକଏ ବସି ଯାଏଁ··· କୋଉ ଅପା ଗଲେ କାଲିଠଉଁ କଏ ଆସୁଚି ?

ଚନୁ ମା—ଥାଅ ହେ, ସୁଲେଖଣି ବୋଉ, ଆମେ ଯାଉଚୁ ଏଥର । ଚନୁ ଲଗେଇଚି, ତା ପାଖରେ ରହିବାକୁ···

ସୁଲେଖଣି ବୋଉ—କଅଣ ଆଉ କରିବ ? ସବୁ ଭାଗ୍ୟ !···ମଣିଷ ପୁଅ ବୋହୁ କରିବାକୁ ହାଇଁପାଇଁ···ଏଣେ ଯା'ର ଅଛି ତା କପାଳରେ ବାର ଅବସ୍ଥା···

(ଶାନ୍ତାର ପ୍ରବେଶ—ସୁଲେଖଣିବୋଉ ଓ ବମାଙ୍କୁ ଦେଖି ଗମ୍ଭୀର ହୋଇଯାଇ)

ଶାନ୍ତା—(ଚନୁ ହାତ ଧରି) ଅପା ଖାଇବ ଆସ ମ ! ମା'ତମେ ବି ଚାଲ···

ଚନୁ ମା—ଚନୁକୁ ନେଇ ଯା···ମୁଁ ପରେ ଖାଇବି ··

ଶାନ୍ତା—ହଉ ତେବେ ଅପା ଆସ···

ସୁଲେଖଣିବୋଉ—ଅଃ···ଆଗ ଶାଶୁଙ୍କୁ ବୁଝେଇ କରି ନିଅ···ମନା କରିଦେଲେ ବୋଲି କଣ ତେମେ ଛାଡ଼ି ଦେଇଯିବ ? (ଟିକଏ ହସି) ବୁଝେଇ ଶୁଝେଇ ନିଅ, ସିଏ ଆଗ ଖାଇଲେ ସିନା ତା ପରେ ତମର ଖାଇବା କଥା ।

ଶାନ୍ତା—(ଚନୁର ହାତ ଧରି ଟାଣି) ଆସ ବା—(ସୁଲେଖଣିବୋଉଙ୍କୁ ଚାହିଁ) ଆମଘରେ ଆଗ ସାନମାନେ ଖା'ନ୍ତି···

ଚିନୁ—(ହାତ ଦୁଗାଲ ନେଇ) ଖୁଡ଼ୀ ! ମାଉସୀ କଣ ତୋର ଥଟ୍ଟା ?

ଖୁଡ଼ୀ—(ଗମ୍ଭୀର ହୋଇ) ହଁ, ମୋର ଭୁଲ ହେଇଚି(ଦୁମ୍ ଦୁମ୍ ହେଇ ଗ୍ଲଲିଗିବା)

ଚିନୁ ମା—ଚିନୁ, କାହିଁକି ତାକୁ କହିଲୁ ? ଏଇନେ ଲାଗିବ ପାଲ୍...

ବନ୍ଧୁ—(ଟିକିଏ ଟିହାଇ ଦେଲା ପରି) ହଅ ଲାଗୁ, ଆମେ ତ ହକ୍ କଥା କହୁଚୁ...ତମେ ଡରିଲାରୁ ସେ ତମକୁ ବେଶି ଡରେଉଚି...

ସୁଲେଈ ବୋଉ—ମୋର ବୋହୂ ଯଦି ଏମିତି କାହାକୁ କହିଥାନ୍ତା ନା ..ତେବେ ତା'ର ଦନେକୁ ମୋର ଦନେ ହେଇଥାନ୍ତା ।

(ମୀନକେତନର ପ୍ରବେଶ)

ମୀନ— (ଟିକିଏ ଉତ୍ସୁକ ହୋଇ) ମା, ଖୁଡ଼ୀ କାହିଁକି କାନ୍ଦୁଚି ?

ଚିନୁ ମା—ମୁଁ କେମିତି ଜାଣିବ ?—ତାକୁ ପଚାରୁନୁ—

ଚିନୁ—ମୀନ, ଏସବୁ କି କଥା ? ସିଏ ସାନ ହୋଇ ବଡ଼ମାନଙ୍କୁ କଣ ଥଟ୍ଟା କରୁଚି ?

ମୀନ—(ଚିଡ଼ିଯାଇ) କାହାକୁ ଥଟ୍ଟା କଲା ?

ଚିନୁ—ସୁଲୁବୋଉ ମାଉସୀଙ୍କୁ —

ମୀନ—(କଥାରେ ବାଧାଦେଇ, ଖଟେଇ ହେଲା ପରି) ସୁ-ଲୁ-ବୋଉ-ମାଉସୀ,—ଲେମ୍ବୁ ପିଇସୀ,—ତେଙ୍କି ଚକୁଳି...କାହିଁକି ଯେ ଏତେ ମାଉସୀ ପିଉସୀ ଆସି ଏଠି ହାଟ ଜମେଉଛନ୍ତି, କିଛି ବୁଝି ପାରୁ ନାହିଁ...

ଚିନୁ ମା—(ଆଘାତ ପାଇଲା ପରି) ମୀନ ! ଆଜି ତୋର ବାପା ନାହାନ୍ତି ବୋଲି କଣ ମୋର ବନ୍ଧୁବାନ୍ଧବଙ୍କୁ ତୁ ଘର ମନା କରି ଦବୁ ?

ମୀନ—(ଚିଡ଼ି ଯାଇ) ଏଥର ପୁରାଣ ବାହାରିଲା---ବାପା ନାହାନ୍ତି ---ଦାଦା ଗଲେଣି—ମତେ ଛାଡ଼ିଦେଲେ—(ଚିନୁବୋଉ ସଜାଡ଼ୁଥିବା ଜିନିଷକୁ ଗୋଇଠା ମାରି) ହେଇଟ୍—ଏଠି ମଣିଷକୁ ଟିକିଏ ଶାନ୍ତି ଦେବେ ନାହିଁ···

ଚିନୁ---(ଗମ୍ଭୀର ହୋଇ, ବିରକ୍ତ ଭାବେ) ମୀନ !! ତୁ କାହାକୁ ଗୋଇଠା ମାରିଲୁ ? ଛୋ---

ଚିନୁ ମା---(ବାଧା ଦେଇ) ଆଲୋ ମାରୁ, କେତେ ଗୋଇଠା ମାରିବ ମାରୁ, ଭଗବାନ ଦ'ଟା ଗୋଡ଼ ଦେଇଛନ୍ତି ଯେତେବେଳେ··· କାଲି ତ ମୁଁ ଚାଲିଯାଉଚି---ଆଉ କାହିଁକି ତୁ ବେସ୍ତ ହଉଚୁ—

ମୀନ --ଏଥର ବାହାରିଲା ପାଲା—ମୁଁ ଯାଉଚି···ସତେ ଯେମିତି ମୁଁ ଏକା ଏ ଘରେ ରହିବା ପାଇଁ ଆସିଚି---ହଉ ଯାଅ— ସମସ୍ତେ ଯାଅ—ଯିଏ କି ପଦେ କହିଲେ ଇଏ କହୁଚି ମୁଁ ଯାଉଛି—ତାକୁ ପଦେ କହିଲେ ସେ କହୁଚି ମୁଁ ଯାଉଚି— ଯାଅ - ଯୁଆଡ଼େ ଯାଉଚ ଯାଅ—

ଚିନୁ ମା—(ଚିଡ଼ି ଉଠି) ହଇରେ ତୋର ଏଡ଼େ କଥା ! ହଉ ଯାଉଚି---ଆଉ ଯଦି ଏ ଦୁଆର ମାଡ଼ିଚି ତ—···ଚିନୁ ପୁଝାରିକୁ କହ ତ ଗୋଟାଏ ରିକ୍ସା ଡାକିବ (ଚିନୁକୁ ଚୁପ୍ ହୋଇ ବସି ରହିବାର ଦେଖି) କଣ ଯିବୁ ନାହିଁ ?

ଚିନୁ---ସକାଳେ ଯାଇଁ ଗାଡ଼ି—

ଚିନୁ ମା—ନାହିଁ ମୁଁ ମୋ ଭାଇ ବସାକୁ ଯାଉଚି—ତୁ ମତେ ସେଇଠୁ ନେଇଯିବୁ—ଆଉ ଏ ଘରେ ପାଣି ଛୁଇଁବି ନାହିଁ —ମୋର ଯେତିକି ହେଲା ସେତିକି (ପୁଝାରିକି ଡାକି)

—ପୁଝାରୀ ! ଖଣ୍ଡେ ରିକ୍ସା ଡାକ ତ !···ହେ ପୁଝାରୀ, ତମକୁ
କଣ ଶୁଭୁ ନାହିଁ ?—ଜଲଦି ଖଣ୍ଡେ ରିକ୍ସା ଡାକ ଦିଅ ।

- ଯାଉଚି,

(ଗୋଳମାଳ ଶୁଣି ସୀତା ଘର ଭିତରକୁ ଆସିବା·--ସୁଲେଇ ବୋଉ ଓ ବନ୍ନୀ ଆପଣା ଭିତରେ ଚାହାଁଚାହିଁ ହୋଇ ମୁହଁ ମୋଡ଼ିବା)

ମୀନ —(ଚିନୁ ମାଙ୍କୁ ଚାହିଁ) ମୁଁ କଣ ତତେ ଯିବାକୁ କହିଲି ?

ଚିନୁ ମା—ଚୁପ୍ ! ତୁ ମୋ ସାଙ୍ଗରେ ପାଟି କର୍‌ନା·--ମୋର ଆଖି ଆଗୁଁଠାରେ ଭୁଲେଇ ଦବାକୁ ବାହାରିଚୁ ? ମନେ କରୁଚୁ ଦୁନିଆରେ ମୋର କେହି ନାହିଁ, ନା ?

ମୀନ—ନାହିଁ କାହିଁକ ?—ଆମକୁ ଛାଡ଼ି ଦୁନିଆଯାକର ସମସ୍ତେ ତୋ ନିଜର ।

(ପୁଝାରୀର ପ୍ରବେଶ)

ପୁଝାରୀ ମା, ରିକ୍ସା ଆଇଲାଣି ।

ମୀନ –(ଚହିଁକ ପଡ଼ି) ରିକ୍ସା ଆଣିବାକୁ କିଏ କହିଲା ? ଯାଅ, ଫେରାଇ ଦିଅ ।

(ପୁଝାରୀ ବୋକାଙ୍କ ପରି ସମସ୍ତଙ୍କୁ ଚାହିଁବା)

ଚିନୁ ମା – ପୁଝାରୀ ! ଜିନିସ ନେଇ ରିକ୍ସାରେ ରଖ ।

ମୀନ – (ନରମି ଯାଇ) ମା, ତୁ ମୋ କଥା ଧରୁଚୁ ?···(ହାତଧରି) ମା, ମୋ କଥା ରଖିବୁ ନାହିଁ ?

ସୀତା –(ଚିନୁମାଙ୍କୁ ହାତଧରି ଅଟକାଇ) ଆରେ ଇଏ କଣ ? କୋଉଠିକି ଯାଉଚ ?

ଚନ୍ଦ୍ରମା — (ହାତଟା ଭିଡ଼ି ନେଇ — କାନ୍ଦ କାନ୍ଦ ହୋଇ) ଯୋଉଠିକି ଗଲେ ବ ମୋ ପେଇଁ ଜାଗା ଅଛି — ଭାବୁଛ କଣ ମୋର କେହି ନାହାନ୍ତି ?

(ଚନ୍ଦ୍ର କି ବମା ଆଖିରୁ ଲୁହ ପୋଛିବା)

ଗୀତା — ମୁଁ ତ ବାବା କିଛି କହି ନାଇଁ — ମୋ' ଉପରେ କାଇଁକି ରାଗୁଚ ?

ମୀନ — (ଛଳ ଛଳ ଆଖିରେ ଚନ୍ଦ୍ରମାଙ୍କୁ ଅଟକେଇ)— ମା !!

ଚନ୍ଦ୍ରମା — (ଗୀତାକୁ ଚାହିଁ) ମୁଁ ମୋ ନିଜ ଉପରେ ରାଗୁଚି — ତୁ ପର ଝିଅ — ତୋ ଉପରେ ରାଗିବାକୁ ଯିବ କାଇଁକି ?

(ଆଖିରୁ ଲୁହ ପୋଛି ପୋଛି ଚନ୍ଦ୍ରମା ବାହାରଯିବା— ପଛେ ପଛେ ମୀନକେତନକୁ ଛାଡ଼ି ଅନ୍ୟ ସମସ୍ତେ ତାଙ୍କୁ ଅନୁସରଣ କରିବା।

ମୀନକେତନ ସେଇ ଖଟ ଉପରେ ମୁଣ୍ଡରେ ହାତ ଦେଇ ବସି ରହିଲ---କିଛି ସମୟ ପରେ ଏକା ଗୀତାର ପ୍ରବେଶ)

ଗୀତା—(ପାଖକୁ ଯାଇ) କଣ ଏତେ ଭାବୁଚ ?

ମୀନ- (ମୁହଁ ଟେକି) ନାଇଁ ଗୀତା···ବାପା ମତେ ଛାଡ଼ି ଚାଲି ଯାଇ- ଥିଲେ—ଆଜି ମା' ବ ମତେ ଛାଡ଼ି ଚାଲିଗଲ।···ବାପା ମା ବୋଲି କହିବାକୁ ଦୁନିଆରେ ମୋର ଆଉ କିଛି ନାହିଁ··· ମୁଁ —(ଆଖି ଲୁହ ଛଳଛଳ ହେବା)

ଗୀତା—(ହସି) ତମେ ପାଗଳ ହେଇଚ ?···ଯିବେ କୁଆଡ଼େ ? କୋଉ ଝିଅ କେତେଟା ମା'ଙ୍କୁ ନେଇ ରଖିଲେଣି ସବୁଦିନ

ପାଇଁ ?—ବଳେ ଧନେ ଫେରି ଆସିବେ···ଦେଖିବ ରହ—

ମୀନକେତନ—( ଟିକିଏ ପ୍ରତିବାଦ ସ୍ୱରରେ ) ତମେ ଚେତବେ

ମା'କୁ ଆଜଯାଏ ଚିହ୍ନି ପାରିନା—(ଉଠି ଘରୁ ବାହାରି ଯିବା)

(ଗୀତା ଝଙ୍କାରେ ହାତଦେଇ ଘର ଗୃହଆଡ଼କୁ ଚାହିଁ ପ୍ରତି ଜିନଷ ପାଖକୁ ଯାଇ ଦେଖି ଦେଖି)

ଗୀତା—(ବଡ ପାଟିରେ) ପୁଝାରୀ, ପୁଝାରୀ···

—ଯାଉଚ

(ପୁଝାରି ଆସିବା)

ପୁଝାରୀ—ମତେ ଡାକୁଥିଲେ ?

ଗୀତା—ଝାଡ଼ୁ ଆଣି ଘରଟାକୁ ଝାଡ଼ିଦଅ ତ !

(ପୁଝାରୀ ଘର ଝାଡ଼ିବା ସମୟରେ)

ପରଦା

## ସପ୍ତମ ଦୃଶ୍ୟ

ଛଅମାସ ପରେ—

[ ଭଙ୍ଗା ସହର—ଗୋଟିଏ ଘରେ ଖଟରେ ଶୋଇଛନ୍ତି ଚିନୁମା—ପାଣ୍ଡୁର ମୁହଁ—ଫୁର୍‌ଫୁର୍ ବାଳ—ଡବ ଡବ ଆଖିରେ ଉପରକୁ ଚାହିଁଛନ୍ତି—ପାଖରେ ବସି ଚିନୁ ମୁଣ୍ଡରେ ହାତ ବୁଲାଇ ଦଉଚ୍ଛି—ସମୟ ଦିନ ବାରଟା ]

ଚିନୁ—ମା, ଦେହ ଟିକିଏ ଭଲ ଲାଗୁଛି ?

(ଚିନୁମା ନିରୁତ୍ତର)

ଚିନୁ—ମା,···ମା ··ମା···(ଟିକିଏ ବ୍ୟସ୍ତ ହୋଇ ଉଠିବା)

ଚିନୁମା—(ଶୂନ୍ୟ ଦୃଷ୍ଟିରେ ଚାହିଁ)—ଏଁ—(ପୁଣି ଆଗପରି ଭାବିବା)

ଚିନୁ—ମା, କଣ ଏମିତି ସବୁବେଳେ ଭାବୁଚୁ ?

ଚିନୁମା—ମୀନକୁ ଟିକିଏ ଦେଖନ୍ତି···ତା କଥା ସଦାବେଳେ ମନେ ପଡ଼ୁଚି ··ପିଲାଦିନେ ସବୁବେଳେ ମୋ'ରି ପିଛୁ ଧରିଥିବ ···ମୁଁ ନଥିଲେ ଖାଇବ ନାହିଁ···ମୁଁ ନ ବସିଲେ ଶୋଇବ ନାହିଁ (ଆଖି ଛଳ ଛଳ ହେଲା)

ଚିନୁ—ହୁଁ !

ଚିନୁମା—ଯେତେହେଲେ ମୋ'ରି ପିଲାଟା ନା···ଟୁଟୁଲିଟା କଣ କରୁଥିବ କେଜାଣି···ଚୋକିଟା ସବୁବେଳେ ମୋ ପଛରେ ଗୋଡ଼ଉଥିଲା ··ଖୋଜି ହଉଥିବ ··(ଆଖି ପୋଛି ମୁଣ୍ଡ ଚିପି ଧରିଲେ)

ଚିନୁ—ମା, କଥା କହିଲେ—ମୁଣ୍ଡ ବେଶି ବିନ୍ଧିବ···ତୁ ଟିକିଏ ଶୋଇ ପଡ଼···କାଲି ସାରା ରାତି ଅନିଦ୍ରା ରହିଚୁ ··

ଚିନୁମା—ଉଃ ··(ଆଖି ବୁଜିଲେ)

(ଚିନୁ ଟେବୁଲ ପାଖକୁ ଉଠିଯାଇ, ଆଖିରୁ ଲୁହ ପୋଛି, ଖଣ୍ଡେ କାଗଜରେ କଣ ଲେଖୁଥିବା ବେଳେ···)

ଚିନୁମା—(ଆଖି ମେଲି) ଜାଣିଲୁ ଚିନୁ,···କାଲି ରାତିରେ ମୀନକୁ ସପନ ଦେଖିଲି ··ତା ମୁହଁଟା କେମିତି ଶୁଖିଯାଇଚି··· ମତେ ଡାକୁଚି ତା ପାଖକୁ ଫେରି ଯିବାକୁ···

ଚିନୁ—ତୁ ସବୁବେଳେ ତା'ରି କଥା ଭାବୁଚୁ ନା, ସେଥିପାଇଁ ତାକୁ ସପ୍ନ ଦେଖୁଚୁ···

ଚନୁମା – ମୁଁ କଣ ସତରେ ଯିବ ଭାବୁଚୁ ?···ଏତେ ଲୋକଙ୍କ ଆଗରେ ସିଏ ମତେ ମାଡ଼ ମାଇଲା ପର କଥା କହିଲା··· (କାନ୍ଦିବା)

ଚନୁ – ସେଗୁଡ଼ାକ ଆଉ କାହିଁକି ଭାବୁଚୁ ? ···ସେ କଣ ଜାଣିଥିଲା ତୁ ଏମିତି ରାଗିଯିବୁ ବୋଲି ?···କହୁ କହୁ ପାଟିରୁ କଣ ବାହାରି ଯାଇଚି···

ଚନୁମା – ମୁଁ ଜାଣେ···(ଗଳାଝାଡ଼ି) ମୁଁ କଣ ତା ପେଇଁ ବାହାରି ଆସିଚି ଭାବଚୁ ? ···ବୋହୁଟା ଦିନରାତି ମତେ ଆଉ ରଖିଥୋଇ ଦେଲା ନାହିଁ––

ଚନୁ––ମା, ତୁ ଟିକିଏ ଶୁଅ ।

ଚନୁମା––କୋଉଠି ସୋରିଷ ଫୁଟିଲେ ମୀନ ପାଖକୁ ବାସନା ଗଲା···କେତେ ଆଉ ସହନ୍ତୁ ? ···ନଇଲେ ··ମୀନ ଯେତେବେଳେ ମତେ ହାତ ଧରି ଅଟକାଉଥିଲା···ମୁଁ––

ଚନୁ – (କଥାରେ ବାଧା ଦେଇ) ମା, ତୋର କଣ ଏଠି କିଛି ଅସୁବିଧା ହଉଚି ?

ଚନୁମା––( କୋହ ଚୁପି ରଖି) ଆଗୁ ଚନୁ···ମୁଁ ମରିଗଲେ ମୀନ –(କାନ୍ଦି ନେଇ ମୁହଁଟିରେ ଦବା)

ଚନୁ––(ବାଧା ଦେଇ) ଏ ସବୁ କାହିଁକି ତୁ ଭାବବାକୁ ଯାଉଚୁ ? ––ତୋର କଣ ହେଇଚି––ଭଲ ହେଇ ଯିବୁ ନାହିଁ କି···

ଚନୁମା––ତୁ···ତୁ ତାକୁ ଲେଖି ଟିକିଏ ଆସିବ ।

ଚନୁ––ଲେଖିଚି ପରା···

ଚନ୍ଦ୍ରମା—କଣ ଲେଖିଲୁ ?···ଲେଖିଲୁ ନାହିଁ ମା ଖୋଜୁଚ ତତେ ଠିକଏ ମଲ୍ ଆଗରୁ ଦେଖିବ ବୋଲି···(କାନ୍ଦିବା)

ଚନ୍ଦୁ—ତୋ ଦେହ ଖରାପ ଅଛି ବୋଲି ଲେଖିଚ (ଟେବୁଲ ଘଣ୍ଟାକୁ ଚାହିଁ) ଆଜ ଆସିବ ନାହିଁ ବୋଧେ—ଗାଡ଼ିବେଳ ତ ହେଇ ଗଲାଣି ।

ଚନ୍ଦ୍ରମା—(ହତାଶ ସ୍ୱରରେ) ବୋଧେ···?

ଚନ୍ଦୁ—(ଚୁ ମାର) କାହିଁକି ଏତେ ଭାବୁଚୁ ଭଲ ! ତତେ ନଜର କରି ଭାବୁଥିଲେ ସେ ତ ନିଶ୍ଚୟ ଆସିବ—ଆଉ ବ୍ୟସ୍ତ ହେଇ କଣ ହବ ?

ଚନ୍ଦ୍ରମା—ମୀନ ତ ପୁଣି ନଜର ହେଇ ମତେ ଛାଡ଼ିଦେଲା ? ମତେ ପୁଣି କହିଲା—"ଯା—ଏଠୁ ଭାଆର—"(ମୁହଁରେ ଲୁଗା ଦେଲେ)

ଚନ୍ଦୁ—ଉଃ, ମା ! ତତେ ଆଉ ପାରିଲି ନାହିଁ·····ସେଇକଥା ଗୁଡ଼େଇ ଗୁଡ଼େଇ —

ଚନ୍ଦ୍ରମା—(ତାକୁ ସାରିବାକୁ ନ ଦେଇ) ତୋ ବାପା ସେଇ ଘରେ ଆଖି ବୁଜିଥିଲେ···ତାଙ୍କର ଝାଳବୁହା ପଇସାରେ ସିଏ ଘର ତୋଳି ଥିଲେ···ଆଉ···ଆଉ ସେଠି ମୋ ପେଇଁ ଥାନ ରହିଲା ନାହିଁ···

(ବାହାରେ ମୀନର ସ୍ୱର ଶୁଣି ଚନ୍ଦ୍ରମା ହଠାତ୍ ଉଠି ବସିବାକୁ ଗଲାବେଳେ ମୁଣ୍ଡ ବୁଲେଇ ଦବାରୁ ପଡ଼ିଗଲେ)

ଚନ୍ଦୁ—(ହଠାତ୍ ଧରି ପକେଇ) ହାଁ, ହାଁ···ମା, ତୁ ଏମିତି ବ୍ୟସ୍ତ ହେଲେ ହବ ? ମୀନ ଏଠିକି ବଲେ ଆସିବ ନାହିଁ ?—

ଏତେ ଦୁର୍ବଳ ଦେହରେ ଏମିତ ହଠାତ୍ ଉଠି ପଡ଼ୁଚୁ, ଯଦି—

(ଘର ଭିତରେ ମୀନକୁ ଦେଖି ଚନୁ ଚୁପ୍ ହୋଇ ଯିବା)

ଚନୁମା—ମୋ ମୀନରେ —(କାନ୍ଦିବା)

ମୀନ —(ଆଖିର ଲୁହ ରୋକିବାକୁ ଚେଷ୍ଟାକରି) ମା—(ଘର ଭିତରେ ମୀନକୁ ଦେଖି ଚନୂ ଚୁପ୍ ହୋଇ ଯିବା)

ଚନୁମା— ମୋ ମୀନରେ···(କାନ୍ଦିବା)

ମୀନ — (ଆଖିର ଲୁହ ରୋକିବାକୁ ଚେଷ୍ଟାକରି) ମା —
(ଚନୁ ଲୁହ ଲୁଚେଇବାକୁ ଅନ୍ୟ ଆଡ଼େ ମୁହଁ କରିବା)

ଚନୁମା —(ମୀନର ଗୋଟାଏ ହାତ ଧରି କାନ୍ଦି) ତୁ ମତେ ଭୁଲିଗଲୁ······

ମୀନ—(ଗଳା ସଫା କରି ) ମା, ମୁଁ ଫେରି ଆସିଚି—ଆଉ ଭୁଲିଲି କେମିତି ?—ତୁ ଯିନା ମତେ ଗୁଡ଼ ଗୁଲ ଆସିଲୁ ।

ଚନୁମା —(କାନ୍ଦି) ମୀନରେ—

ମୀନ—(ଚନୁମାଙ୍କ ଲୁଗାରେ ଲୁହ ପୋଛି ଦେଇ) ଛି, ଆଉ କା'ନ୍ଦେ ନା—ମୁଁ ଫେରି ଆସିଲିଣି···ଓଃ ତୋ ଦେହ କେଡ଼େ ତାତିଚି !

ଚନୁମା—ମୀନ, ମୁଁ ଆଉ ଭଲ ହେବି ନାହିଁ ରେ—( ଆଖି ପୁଣି ଲୁହରେ ଭରିଗଲା )

ମୀନ—କାହିଁକି ହବୁ ନାହିଁ ? —ନିଶ୍ଚେ ଭଲ ହେବୁ --ତୁ ଦେଖ୍—

ଚନୁ—ଗୀତାକୁ ଟିକଏ ଆଣିଲୁ ନାହିଁ ? ତାକୁ ବି ଖୋଜୁଥିଲି···

ମୀନ—(ବିରକ୍ତ ଭାବେ) ହୁଁ, ଗୀତାକୁ ଆଣିବ !! ସେ ଆସି କଣ କରିବ ?

ଚନୁମା—ମୀନ···ବୋହୂ ଆସିଲା ନାହିଁ ? ଝିଅଟି—

ମୀନ—(ବାଧା ଦେଇ) ମୁଁ ପର ଆସିଛି······ତୁ କଣ ମୋ'ଠୁ ତାକୁ ବେଶୀ ଖୋଜୁଥିଲୁ ?

ଚନୁମା—(ଉପରକୁ ଚାହିଁ) ବୋହୂ···ତା'ଠୁ ଟୋପେ ତୁଳସୀ ପାଣି···କାଳେ ମରିଯିବି···

ମୀନ—ତୁ ତ ତାକୁ ବୋହୂ କରିବାକୁ ଚାହିଁ ନ ଥିଲୁ—ତା ପାଇଁ କାହିଁକି ଦୁଃଖ କରୁଚୁ ?···ମନେକର ମୁଁ ବାହା ହୋଇ ନାହିଁ ।

ଚନୁମା—ଛି, ବାପ,···ସେମିତି କହନ୍ତି ? ସେ ପରା ବୋହୂ !

ମୀନ—(ଖଟରେ ହେଲାପରି) ହେଁ ବୋହୂ !!

ଚନୁ—ମୀନ, ଗୀତା କଣ ମନାକଲା ଆସିବାକୁ ?

ମୀନ—(ଗମ୍ଭୀର ହୋଇ) ମୁଁ ତାକୁ ମନା କଲି—

ଚନୁମା—ଆହା, ତାକୁ ବାଧିଥିବ—

ମୀନ—(ଅଟ୍ଟ କଲାପରି) ବହୁତ ବାଧିଥିବ···ତା କଥା ନରଖି ମୁଁ ଚାଲି ଆସିଛି—

ଚନୁମା—ପର ଝିଅ—

ମୀନ—ତା'ର ବି ତ ମା ଅଛି !

ଚନୁମା—ତେବେ ସିଏ ମନା କରି ଦେଲା !! (ଛଳ ଛଳ ଆଖିରେ) ମୋ ଦେହ ଛୁଇଁ କହିଲୁ ମୀନ, ସେ—

ଚନ୍ଦୁ — (ବାଧା ଦେଇ) ମୀନ, ତୁ ଯା ଲୁଗା ବଦଳ ମୁହଁହାତ ଧୁଅ···ମା ଟିକିଏ ଶୋଉ···

ମୀନ — (ଅନ୍ୟମନସ୍କ ଭାବରେ) ହୁଁ ।

ଚନ୍ଦୁ — ଆଉ ବସିଲୁ କାହିଁକି ? ଯା —

(ମୀନକେତନ ଘରୁ ବାହାରିଯିବା)

ଚନ୍ଦୁମା — (କଣ ସେମିତି ଭାବୁ ଭାବୁ) ବୋହୂର ଦୋଷ ନାହିଁ··· ମୋର କଥା ମତେ କହୁଥିଲା···

ଚନ୍ଦୁ — ତୁ ଟିକିଏ ଶୋଇପଡ଼ — ପରେ କହିବୁ ।

ଚନ୍ଦୁମା — ମଲାବେଳେ ଶାଶୁଙ୍କ ପାଟିରେ···ପାଣି ଟୋପେ ଦେଇ ନାହିଁ···(ବାଷ୍ପାକୁଳ କଣ୍ଠରେ) ମତେ ସିଏ···ଭାରି ଖୋଜି-ଥିଲେ···ପହଞ୍ଚିଲା ବେଳକୁ ପ୍ରାଣ ଛାଡ଼ି ଯାଇଥିଲା···ମତେ ସେ ଦେଖି ବି ପାରିଲେ ନାହିଁ·· (କାନ୍ଦିବା)

(ଚନ୍ଦୁ ସେମିତି ଚୁପ ହୋଇ ବସି ରହିଲା)

ଚନ୍ଦୁମା — (ଆଖି ପୋଛି) ସବୁ ଜାଣିଥିଲି···ତେବେ ବି ଜାଣି ନ ଥିଲି···ଆଉ ଆଜି ମୁଁ ଖୋଜିଲେ ପାଇବି କୋଉଠୁ ?

ଚନ୍ଦୁ — ମା, ତୁ ବ୍ୟସ୍ତ ହଅନା···ଦେଖିବୁ ସେ ନିଶ୍ଚେ ଆସିବ ··

ଚନ୍ଦୁମା — କେଜାଣି ? (ନିରାଶ ସୂଚକ ଭଙ୍ଗୀରେ ହାତ ହଲେଇବା ବେଳେ)

— ପରଦା —

